

# ହାତୀର ହିଷ୍ଟି



ଭୂପେନ୍ ମହାପାତ୍ର

# ହାତୀର ହିଷ୍ଟ୍ରି

ନୃପେନ୍ ମହାପାତ୍ର

ଆର୍ଯ୍ୟ ପ୍ରକାଶନ
ବାଦାମବାଡ଼ି, କଟକ

ଗଳ୍ପ
# ହାତୀର ହିଷ୍ଟ୍ରି

ଗାଳ୍ପିକ
ଭୂପେନ୍ ମହାପାତ୍ର
ଏଲ୍-୪୫, ଛେଣ୍ଡ କଲୋନୀ,
ରାଉରକେଲା–୧୫

ପ୍ରକାଶକ :
ଆର୍ଯ୍ୟ ପ୍ରକାଶନ
କଟକ–୧୨

ISBN :81-7412-206-3

ମୁଦ୍ରଣ :
ଶ୍ରୀ ଜଗନ୍ନାଥ ଲାମିନେଟ୍ର
ବାଦାମବାଡ଼ି, କଟକ–୭୫୩୦୧୨

ପ୍ରଥମ ପ୍ରକାଶ : ୨୦୦୨

ପ୍ରଚ୍ଛଦ :
ସ୍ୱାହା ମିଶ୍ର

ମୂଲ୍ୟ : ପଚାଶ ଟଙ୍କା ମାତ୍ର

# ପ୍ରାକ୍‌ଭାଷ

'ହାତୀର ହିଷ୍ଟ୍ରି'ର ଇତିହାସ ଅଛି। ଏହି ଗଳ୍ପ ସଂକଳନଟି ହୁଏତ ପାଞ୍ଚବର୍ଷ ଆଗରୁ ପ୍ରକାଶ ପାଇ ଥାଆନ୍ତା। କିନ୍ତୁ ଅବସ୍ଥା ଚକ୍ରରେ ପଡ଼ି ତାହା ଏପରି ପେସି ହୋଇ ଗଲା ଯେ ଶେଷରେ ଶତାବ୍ଦୀ ପାର ହୋଇଗଲା।

ପ୍ରତ୍ୟେକ ଲେଖାର ଗୋଟାଏ ସମୟ ଥାଏ। ସବୁ ଲେଖା ସମୟକୁ ଅତିକ୍ରମ କରି ନ ଥାଏ। ଯାହା ଚିରଦିନକୁ ଏକାପରି ଦେଖାଯାଏ ବା ଯେତେବେଳେ ପଢ଼ିଲେ ମଧ୍ୟ ସେଇ ସମୟର ବୋଲି ମନେ ହୁଏ ତାକୁ କାଳଜୟୀ କହି ହେବ। ଏଇ ଦୃଷ୍ଟିରୁ ବିଚାର କଲେ ମୋ ଗଳ୍ପଗୁଡ଼ିକ ମଧ୍ୟ ସେମିତି। ପ୍ରତ୍ୟେକ ଗଳ୍ପ ସେଇ ସମୟର ସ୍ୱାକ୍ଷର ବହନ କରି ଥାଆନ୍ତି। ଯୋଉ ସମୟକୁ ମୁଁ ଯେମିତି ଦେଖିଚି ତାକୁ ଗଳ୍ପ ଭିତରେ ଧରି ରଖିବାକୁ ଚେଷ୍ଟା କରିଚି। ବହିଟି ସବୁ ପ୍ରକାର ଝଡ଼ ଝଞ୍ଜା ଭିତର ଦେଇ ଗତି କରି ସାରିଲା ପରେ ଶେଷରେ ଯେତେବେଳେ ଆମ୍ଭ ପ୍ରକାଶ କରିବାକୁ ପୁଣି ଥରେ ସଜବାଜ ହେଲା ସେତେବେଳେ ଦେଖିଲି କେତୋଟି ଗଳ୍ପ ସମୟର କଷଟି ପଥରରେ ଏମିତି ଘସି ହୋଇ ଗଲାଣି ଯେ ତାକୁ ଆଉ ଏକ ବିଂଶ ଶତାବ୍ଦୀର ଗଳ୍ପମାନଙ୍କ ସାଥିରେ ରଖି ହେବ ନାହିଁ। ଏମିତି ଦେଖିବାକୁ ଗଲେ ଦୁଇଟି ଶତାବ୍ଦୀର ମଧ୍ୟବର୍ତ୍ତୀ ସ୍ଥାନ ଏକ ଟ୍ରାଞ୍ଜିସନ। ବିଂଶ ଶତାବ୍ଦୀର ଶେଷ ଭାଗରେ ଆମ ସମାଜରେ ଏତେ ଦ୍ରୁତ ପରିବର୍ତ୍ତନ ସଂଘଟିତ ହୋଇଚି ଯେ ତାକୁ ସାହିତ୍ୟ ଠିକ୍ ଭାବେ ତୋଳି ଧରି ରଖିଚି ବୋଲି କହି ହେବ ନାହିଁ। ସ୍ୱାଧୀନୋତ୍ତର ଭାରତବର୍ଷ ଯେଉଁ ନୂତନ ଶିଳ୍ପାୟନ ଦେଖିଲା, ଅର୍ଥନୀତିର ଯେଉଁ ନୂତନ ଅଭ୍ୟୁଦୟ ଘଟିଲା, ଯେଉଁ ଅଭୂତପୂର୍ବ ସାମାଜିକ ଓ ସାଂସ୍କୃତିକ ପରିବର୍ତ୍ତନକୁ ପ୍ରତ୍ୟକ୍ଷ କଲା, ମାତ୍ର ତିରିଶ ଚାଳିଶ ବର୍ଷ ପରେ ନୂଆ କରି ଦେଖା ଦେଇଥିବା ଗ୍ଲୋବାଲାଇଜେସନ ଓ ତାର ବଜାର ଅର୍ଥନୀତି ସେ ସବୁକୁ ଓଲଟ ପାଲଟ କରି ଦେଲା। ସମାଜର ଚିତ୍ର ସଂପୂର୍ଣ୍ଣ ବଦଳି ଗଲା। ବଦଳି ଗଲା ତାର ମଣିଷ ଓ ମାନସିକତା। ଗୋଟାଏ ଲେଖକ ପାଇଁ ଏଇ ଟ୍ରାଞ୍ଜିସନ ଏକ ସଂକଟଜନକ ଅବସ୍ଥା ସୃଷ୍ଟି କଲା। ସମୟ ସହିତ ତାଳ ଦେଇ ସେ କେତେ ଜୋରରେ ଦଉଡ଼ି ପାରିବ? ଆଗକୁ ଦେଖିଲା ବେଳକୁ ପଛଟା ଅନ୍ଧାର ହୋଇ ଯାଉଚି। ପଛଟାକୁ ସାମନେ ଆଣିଲାବେଳକୁ

ବର୍ତ୍ତମାନ ହାତ ମୁଠାରୁ ଖସି ଯିବାକୁ ବସିଲାଣି। ଗୋଟାଏ ଗଳ୍ପର କ୍ଷୁଦ୍ର ପରିସର ଭିତରେ ଲେଖକ ଗତ ଓ ଆଗତକୁ ବାନ୍ଧି ରଖିବାକୁ ଚେଷ୍ଟା କଲା ବେଳକୁ ସମୟ ଅପେକ୍ଷା କରେ ନାହିଁ।

ତା'ରି ଭିତରେ ମଧ୍ୟ ପଶି ଆସିଲା ଲକ୍ଷ୍ମଣଙ୍କ 'ମାୟାମୃଗ' ପରି 'ଉତ୍ତର ଆଧୁନିକତା'। କବିତା ପଛକୁ ଗଳ୍ପ ମଧ୍ୟ ଧାଡ଼ି ବାନ୍ଧିଚି ବୋଲି କୁହାଗଲା। ମୋଟ ଉପରେ ସମଗ୍ର ସାହିତ୍ୟ ଉପରେ ତଥା କଥିତ ଉତ୍ତର ଆଧୁନିକତାର ଛାପ ଅଛି ବୋଲି କୁହାଗଲା। ମୁଁ କିନ୍ତୁ ଜାଣେନା ମୋର ଏ ଗଳ୍ପଗୁଡ଼ିକ ଉତ୍ତର ଆଧୁନିକତାର ଖୋଳ ଭିତରେ ରହି ପାରିବ କି ନା। ସେ ବିଚାର ସମାଲୋଚକମାନଙ୍କର। ଯିଏ ଯେମିତି ଦେଖିବ।

ପ୍ରତ୍ୟେକ ଗଳ୍ପରେ ସାମାଜିକ ପ୍ରତିବଦ୍ଧତା ବା ଗୋଟାଏ 'ମେସେଜ' ଏକ ଅନିବାର୍ଯ୍ୟ ଆବଶ୍ୟକତା। ସେତକ ନ ଥିଲେ ସମାଜ ତାକୁ କାହିଁକି ଗ୍ରହଣ କରିବ? ଏଇ ସବୁ କଥାକୁ ବିଚାରକୁ ନେଲା ବେଳକୁ ଦେଖିଲି ସଂକଳନରୁ କେତେକ ଗଳ୍ପ ବାଦ ଦେବାକୁ ହେବ। ସେତକ କଲି ଏବଂ ନୂଆ କିଛି ଯୋଡ଼ିଲି।

'ଅଚିହ୍ନା ଅନ୍ଧାର' ସେଇ ନୂଆ ଭିତରୁ ଗୋଟିଏ। ଏହି ଗଳ୍ପଟି ଇତି ମଧ୍ୟରେ ହିନ୍ଦୀରେ ଅନୂଦିତ ହେଇ 'ସମକାଳୀନ ଭାରତୀୟ ସାହିତ୍ୟ'ରେ ପ୍ରକାଶ ପାଇଲା ପରେ ଏବେ ମାଳୟାଳମ ସମେତ ଅନ୍ୟ କେତୋଟି ଭାରତୀୟ ଭାଷାରେ ଅନୂଦିତ ହେଲାଣି। ସମାଲୋଚକମାନେ ତାକୁ ଗୋଟାଏ 'ଯୁଦ୍ଧ ବିରୋଧୀ' ଗଳ୍ପ ହିସାବରେ ଗ୍ରହଣ କରିଛନ୍ତି। ଓଡ଼ିଆରେ ଯେଉଁ ଅଳ୍ପ କେତୋଟି ଯୁଦ୍ଧ ବିରୋଧୀ ଗଳ୍ପ ଅଛି ତା ଭିତରୁ ଗୋଟାଏ ବୋଲି ସେମାନେ କହନ୍ତି।

ଏଥିରେ ସନ୍ନିବେଶିତ ଆଉ କେତୋଟି ଗଳ୍ପ ମଧ୍ୟ ହିନ୍ଦୀରେ ଅନୂଦିତ ହେଇ ପ୍ରକାଶ ପାଇ ସାରିଚି। ତାର କିଛି ଆଲୋଚନା ସମକାଳୀନ ଭାରତୀୟ ସାହିତ୍ୟରେ ମଧ୍ୟ ପ୍ରକାଶ ପାଇଚି। ଗଳ୍ପଗୁଡ଼ିକ ପ୍ରଥମେ ଓଡ଼ିଶାର ବିଭିନ୍ନ ପତ୍ରିକାରେ ପ୍ରକାଶ ପାଇ ସାରିଚି। ଆଜି ସେ ସବୁ ପୁସ୍ତକାକାରରେ ପ୍ରକାଶ ପାଉଥିବା ବେଳେ ମୁଁ ସେ ସବୁ ପତ୍ରିକାର ସଂପାଦକମାନଙ୍କ ଠାରେ କୃତଜ୍ଞତା ସ୍ୱୀକାର କରୁଚି।

ଏକ ପ୍ରକାର ସମାଧି ଭିତରୁ ପାଣ୍ଡୁଲିପିକୁ ଆଣି ଆଜି 'ଆର୍ଯ୍ୟ ପ୍ରକାଶନ' ଖୁବ୍ କମ୍ ସମୟ ଭିତରେ ପୁସ୍ତକଟିକୁ ଲୋକ ଲୋଚନକୁ ଆଣୁ ଥିବାରୁ ମୁଁ ତାଙ୍କଠାରେ ମୋର ଅକୃପଣ କୃତଜ୍ଞତା ଜଣାଉଛି।

ଭୂପେନ୍ ମହାପାତ୍ର

# ଏଥିରେ ଅଛି


| | ବିଷୟ | ପୃଷ୍ଠା |
|---|---|---|
| ୧ । | ଅଚିହ୍ନା ଅନ୍ଧାର | ୧ |
| ୨ । | ହାତୀର ହିଷ୍ଟ୍ରି | ୭ |
| ୩ । | ରାସ୍ତା | ୧୫ |
| ୪ । | କାଚଘର | ୨୬ |
| ୫ । | ଝରକା | ୩୬ |
| ୬ । | ଡାଉନ୍ ଟ୍ରେନ୍ | ୪୨ |
| ୭ । | ଶେଷ ପାହଚ | ୪୯ |
| ୮ । | କଇଁଛ | ୫୭ |
| ୯ । | ସମୟର ସ୍କେଚ୍ | ୬୫ |
| ୧୦ । | ହମିଦର ହାତ ... | ୭୦ |
| ୧୧ । | ଅପହଞ୍ଚ ଇଲାକା | ୭୯ |
| ୧୨ । | ଜାତୀୟ ରାଜପଥ-୨ | ୮୬ |
| ୧୩ । | ଶେଷ ସହରର ଶାଏରୀ ... | ୯୭ |


—୦—

## ଏହି ଲେଖକଙ୍କର ଅନ୍ୟ କେତୋଟି ପୁସ୍ତକ

୧- ପୃଥିବୀ ଓ ପୃଥିବୀ (ଗଳ୍ପ ସଂକଳନ)

୨- ଗୋଟିଏ ମେଣ୍ଢାପଲ (ଗଳ୍ପ ସଂକଳନ)

୩- ପ୍ରମିଳା (ଗଳ୍ପ ସଂକଳନ)

୪- ଭାରତ ଭାଗ୍ୟ ବିଧାତା (ବ୍ୟଙ୍ଗ ଗଳ୍ପ ସଂକଳନ)

୫- ପ୍ରଥମ ପୃଥିବୀ (ଉପନ୍ୟାସ)

୬- ଉପତ୍ୟକାର ଉପକଥା (ଭ୍ରମଣ କାହାଣୀ)

୭- ଅପୂର୍ବ ପୂର୍ବ (ଭ୍ରମଣ କାହାଣୀ)

୮- ଲୁ ତଥା ଅନ୍ୟ କାହାନୀୟା (ହିନ୍ଦୀ ଗଳ୍ପ ସଂକଳନ)
ଅନୁବାଦ— କୁମାର ହସନ
ଡକ୍ଟର (ଶ୍ରୀମତୀ) ବାସନ୍ତୀ ରଥ

୯- ଚର୍ଚ୍ଚିତ ଚିଟାଉ (ଅନୁବାଦ)
ରବୀନ୍ଦ୍ର ନାଥଙ୍କ ୧୦୭ଟି ଚିଠିର ଅନୁବାଦ

୧୦- ଖୋଳ (ଗଳ୍ପ ସଂକଳନ)

୧୧- ଚନ୍ଦ୍ରସେଣାର ଚନ୍ଦ୍ରାଲୋକ (ବ୍ୟଙ୍ଗ ଗଳ୍ପ ସଂକଳନ)

୧୨- ଏବେ ବି ରେବତୀ (ଗଳ୍ପ ସଂକଳନ)

୧୩- ଜାତୀୟ ଭାବଧାରା ଓ ଅନ୍ୟାନ୍ୟ ପ୍ରବନ୍ଧ

# ଅଚିହ୍ନା ଅନ୍ଧାର

"ଯୁଦ୍ଧ୍ କିଉଁ ହୋତା ହେ ମା ? ଯୁଦ୍ଧ୍ କିଉଁ ହୋତା ହେ ?" କି ଉତ୍ତର ଦେବ ଶୀଲା । କଅଣ କହି ସେ ବୁଝେଇ ପାରିବ ତାର ତିନି ଟପି ନ ଥିବା କଅଁଳ ଶିଶୁ ଶତ୍ରୁଜିତ୍‌କୁ ? ଶତ୍ରୁ ତଥାପି ତା ମାଆ ମୁହଁକୁ ଅନେଇ ରହିଥିଲା । ଶୁଣିବାକୁ ଚାହେଁ, ଯୁଦ୍ଧ କଅଣ ? କାହିଁକି ହୁଏ ଏବଂ ଯୁଦ୍ଧର ଇତିହାସ ।

"ବୋଲ୍ ମା, ତୁ ଚୁପ୍ କିଉଁ ହେ । ଯୁଦ୍ଧ କ୍ୟା ହେ ? କିଉଁ ହୋତା ହେ ?"

ଶୀଲା ଆଖିକୁ ସମଗ୍ର ଆକାଶଟା ଫାଙ୍କା ଦେଖାଗଲା । ବାୟୁ ମଣ୍ଡଳଟା ଯେମିତି କେମିତି କୋଉଠି ଅଟକି ଗଲା । ଅଚଳ ହୋଇଗଲା ସମଗ୍ର ପୃଥିବୀଟା- ଘାଣ୍ଟ ପାଲଟି ଗଲା ।

ସେ କେଉଁଠୁ ପାଇବ ଯୁଦ୍ଧର ପରିଭାଷା ? ଯୁଦ୍ଧ କଅଣ ସେ କଥା ସେ ନିଜେ ମଧ ଜାଣି ନାହିଁ । ସେ ନିଜେ କେବେ ଯୁଦ୍ଧକ୍ଷେତ୍ରକୁ ଯାଇନାହିଁ । ଯୁଦ୍ଧ କରିନାହିଁ । ଯୁଦ୍ଧ କଥା ଚିନ୍ତା କରିନାହିଁ କିମ୍ବା ଯୁଦ୍ଧ ଯେ ମଣିଷ ଜୀବନର ଏକ ଆବଶ୍ୟକତା କି ନା ସେ କଥା ମଧ୍ୟ ସେ ଚିନ୍ତା କରି ନାହିଁ ।

ଶୀଲାର କେହି ଶତ୍ରୁ ନ ଥିଲେ । ଆଜି ମଧ୍ୟ ନାହାନ୍ତି । ତା' ମନରେ ଶତ୍ରୁ କେହି ଥାଇ ପାରେ ସେ କଥା ସେ ଭାବି ନାହିଁ । ଏପରିକି ଶତ୍ରୁଟା ଯେ ଗୋଟାଏ ଶବ୍ଦ ଏ କଥା ମଧ୍ୟ ସେ ଜାଣି ନାହିଁ ।

ଏସବୁ ସତ୍ତ୍ୱେ ଶୀଲା ତା' ଜୀବନରେ ଅନେକ ଯୁଦ୍ଧ ଅଙ୍ଗେ ଲିଭେଇଚି । ହରିଆଣାର କେଉଁ ପାହାଡ଼ ପର୍ବତର ଘଞ୍ଚ ଜଙ୍ଗଲ ଭିତରେ ଏକ ଅଖ୍ୟାତ ପଲ୍ଲୀର ଗୋଟାଏ କୁଡ଼ିଆ ଘରେ ତା' ବାପା ମାଆ ସହିତ ଥିଲା ବେଳେ ସେ କ୍ଷୁଧା ସହିତ, ରୋଗ ବେମାରୀ ସହିତ ଏବଂ ଏପରିକି ବେଳେବେଳେ ମୃତ୍ୟୁ ସହିତ ବରାବର ଯୁଦ୍ଧ କରି ଆସିଛି । ସେ ଯୁଦ୍ଧ ଥିଲା ଅବିରାମ । ଅସୀମ-ଥିଲା ତାର ଦିଗ ଓ ଦିଗନ୍ତ ।

ଶୀଲା ତା ଜୀବନରେ ୨୪ଟି ଗ୍ରୀଷ୍ମକୁ ସ୍ୱାଗତ କରିଛି । ପୁଣି ହସି ହସି ବିଦାୟ ମଧ୍ୟ ଦେଇଛି । ଗ୍ରୀଷ୍ମର ଉତ୍ତାପକୁ ସେ ତାର ଦୁଇ [illegible] ପାପୁଲିରେ ଏପାଖ ସେପାଖ କରିଛି । ତାକୁ ଆଦର କରିଛି, ନିଆଁରେ [illegible] ସେମିତି ପରି ଆଣି ନିଜ ଗାଲରେ ଥୋଇଛି ଏବଂ ପୁଣି ଫୋପାଡ଼ି ଦେଇଛି !

ଗ୍ରୀଷ୍ମର ତୀବ୍ରତାକୁ ସେ ଅନୁଭବ କରିଛି। ତାର ବିଭୂତିକୁ ଦେହ ସାରା ଅବିର ପରି ବୋଳିଛି ଏବଂ ବିଭୋର ହୋଇଛି। ମଣିଷ ଜୀବନରେ ଗ୍ରୀଷ୍ମର ଉତ୍ତାପକୁ ଏକ ଅବଧାରିତ ଧାରା ଭାବେ ଗ୍ରହଣ କରିଛି।

କିନ୍ତୁ ତା' ଭିତରେ ବସନ୍ତମାନେ କେବେ ଅନାହୂତ ପଶି ଆସିଛନ୍ତି ସେ କଥା ସେ ଜାଣିବାକୁ ଅବସର ବି ପାଇନି।

ଶୀଲା ତା ବାପା ମାଆ ସାଥିରେ ବରାବର ଗହମ କ୍ଷେତକୁ ଯାଇଛି, ଅମଳ କରିଛି, ଗାଈ ମଇଁଷିମାନଙ୍କର ଯତ୍ନ ନେଇଛି, ହାଣ୍ଡି ହାଣ୍ଡି ଦୁଧ ମୁଣ୍ଡରେ ନେଇ ଗାଁରୁ ଗାଁକୁ ଯାଇଛି ଏବଂ ସଞ୍ଜ ହେଲା ମାତ୍ରେ ଗାଈମାନଙ୍କୁ ଗୁହାଳରେ ବାନ୍ଧି ପୁଣି ଯାଇ ରୋଷେଇ ଘରେ ରୁଟି ତିଆରି କରିଛି ଦୁଇ ହାତର ପାପୁଲି ଭିତରେ ଠୋ ଠୋ ପିଟାପିଟି କରିଚି।

ବସନ୍ତ ଆସେ ଘରବାଡ଼ିରେ। କ୍ଷେତ ଖମାରରେ। ପତ୍ର କଅଁଳରେ ଆଉ ଫୁଲ ପାଖୁଡ଼ାରେ। ବସନ୍ତ ବି ଆସେ ପେନ୍ଥା ପେନ୍ଥା ଅଙ୍ଗୁର ଓ ଲାଲ ଲାଲ ଆପେଲ ଦେହରେ। କିନ୍ତୁ ମଣିଷର ଦେହକୁ କେବେ ବସନ୍ତ ଆସେ ସେ କଥା ସେ ମୋଟେ ଜାଣେନି କି ଜାଣିବାକୁ ଇଚ୍ଛା ମଧ୍ୟ କରେନି।

ଶୀଲାର ଏବେବି ମନେ ଅଛି ତାକୁ ଠିକ୍ ଷୋହଳ ଛୁଇଁଲା ବେଳକୁ ସେ ଯେତେବେଳେ ଦିନେ ଦୁଇ ତିନିଟା କଅଁଳିଆ ମେଣ୍ଢାଛୁଆଙ୍କୁ ଛାତିରେ ଚାକି ଯମୁନା କୂଳରେ ଖେଳୁଥିଲା, ଆଉ ତା' ବାପର ମେଣ୍ଢାପଲ ଉପରେ ନଜର ମଧ୍ୟ ରଖିଥିଲା ସେତେବେଳେ ପାଖ ଗାଁର ପରମଜିତ୍ ହିଁ ତାକୁ ପ୍ରଥମେ କହିଥିଲା, ଶୀଲା! ତୁ ଏ କଦମ୍ବ ଗଛର ଫୁଲମାନଙ୍କୁ ଦେଖୁଚୁ? କି ସୁନ୍ଦର କହିଲୁ?

ଦେଖୁଚିତ ବରାବର। କିନ୍ତୁ ସୁନ୍ଦର ଆଉ କଅଣ?

ପରମଜିତ୍ ସେତେବେଳକୁ ନୂଆ ନୂଆ ଆର୍ମିରେ ଜଏନ କରିଥାଏ। ତା' ଛାତିଟା ବେଶ୍ ମୋଟା ଓ ଓସାରିଆ। ମୁହଁଟା ବି ବଡ଼। ଗୋଛାଏ ବାଳ ମୁଣ୍ଡ ଉପରେ ଫୁରୁ ଫୁରୁ ଉଡୁଥାଏ। ଆଉ ତା'ର ଆଖି ଦି'ଟା- ମହାଭାରତର ସେ ଅର୍ଜୁନର ତୀର ପରି ଯେତିକି ତୀକ୍ଷ୍ଣ ସେତିକି ଧାରୁଆ। ଇସ୍, ସିଧା ଚାହିଁ ହୁଏନା। କାହିଁକି କେଜାଣି ଏମିତି ବେଳେବେଳେ ହୁଏ।

ଶୀଲା ତଳକୁ ମୁହଁ ପୋତି ହସିଦିଏ ଏବଂ ମନେ ମନେ କହେ, ବଦମାସ୍ କୋଉଠିକାର।

ସେ ଆଉ ଅପେକ୍ଷା କରେନା। ମୁଣ୍ଡରେ କଟା ଆଖୁର ବୋଝଟା ଥୋଇ ମେଣ୍ଢାପଲ ଅଡ଼େଇ ଅଡ଼େଇ ଫେରି ଆସେ। ଆଉ ଥରେ ପରମଜିତ୍ ଆଡ଼କୁ ମୁହଁ ଫେରେଇ ଦେଖି ପାରେନା, ଯଦିଓ ଦେଖିବାର ଇଚ୍ଛା ତାକୁ ଅନେକ ସମୟ ପର୍ଯ୍ୟନ୍ତ ବ୍ୟାକୁଳ କରି ରଖେ।

ସେହି ଶୀଳା ଜୀବନର ଅହରହ ଯୁଦ୍ଧ ଭିତରେ ଆଉ ଗୋଟାଏ ଯୁଦ୍ଧକଥା ମୋଟେ ଭାବି ପାରି ନ ଥିଲା, ଯେମିତି ସେ ଆଜି ଭାବୁଛି। ଆଉ ସବୁଠୁ ଆଶ୍ଚର୍ଯ୍ୟର କଥା ତାର ତିନି ବର୍ଷର ପୁଅ ମଧ୍ୟ ଆଜି ସେ କଥା ଗଭୀର ଭାବେ ଭାବୁଛି।

ସେ ପୁଅକୁ କୋଳକୁ ନେଲା ଏବଂ ତା' ମୁଣ୍ଡରେ ହାତ ମାରି କହିଲା, "ଓ୍ୱ ସବ୍ କୁଛ୍ ନେହିଁ ହେ ବେଟା। ବାଦ୍‌ମେ ତୁମ୍‌କୋ ସବ୍ ମାଲୁମ୍ ହୋ ଯାଏଗା।"

ଶନ୍ତୁ ବୋଧେ ତା ମାଆ କଥାରେ ସନ୍ତୁଷ୍ଟ ହୋଇ ପାରିଲାନି। ତା ମାଆ ଯେ ତାକୁ ଭୁଲେଇ ଦେବାକୁ ଚାହୁଁଚି କିମ୍ୱା କୌଣସି କାରଣରୁ କଥାଟା କହିବାକୁ ଚାହୁଁନି ଏମିତି ଗୋଟାଏ ଧାରଣା ତା ମନରେ ସୃଷ୍ଟି ହେଲା। ସେ ପୁଣିଥରେ ଖଳାବାଡ଼ି ଆଡ଼କୁ ଆଙ୍ଗୁଳି ଦେଖାଇ ପଚାରିଲା, "ଓ୍ୱହ ଦେଖୋ, ଓ୍ୱେ ଦୋନୋଭି ଯୁଦ୍ଧ କର୍ ରହେହେଁ କ୍ୟା?" ଦୂରରେ ଦୁଇଟା ମେଣ୍ଢା ସେମାନଙ୍କ ଖେଳ ଲଢ଼େଇରେ ବ୍ୟସ୍ତ। ସେମାନେ ଦୁଇ ଗୋଡ଼ ଟେକି ସିଧା ଉପରକୁ ଉଠି ଯାଉଥିଲେ ଏବଂ ତଳେ ପଡ଼ିଲା ବେଳକୁ ଅତି ଶକ୍ତ ଭାବରେ ଦୁଇଟା ମୁଣ୍ଡକୁ ବାଡ଼େଇ ଦେଉଥିଲେ। ପୁଣି ଉଠୁଥିଲେ ଏବଂ ପୁଣି ପଡୁଥିଲେ।

ଶୀଳା ଆହୁରି ବ୍ୟସ୍ତ ହୋଇ ପଡ଼ିଲା। ସେ କିପରି ବୁଝେଇବ ଯେ ଏଇଟା ଯୁଦ୍ଧ ନୁହେଁ ବୋଲି? ସେ ଯଦି କହିବ ଏଇଟା ମେଣ୍ଢାମାନଙ୍କର ଯୁଦ୍ଧ ନୁହେଁ-ଗୋଟାଏ ଖେଳ, ଶନ୍ତୁ ସେ କଥା ବୁଝିବ ତ? ସେତେବେଳେ ଶୀଳା କି ଉତ୍ତର ଦେବ? ସେ କଅଣ କହି ପାରିବ କି, ଯେତେବେଳେ ମେଣ୍ଢାମାନେ ନିଜେ ନିଜେ ଲଢ଼ାଇ କରନ୍ତି ସେତେବେଳେ ସେଇଟା ଖେଳ। କିନ୍ତୁ ମେଣ୍ଢାମାନେ ଯେତେବେଳେ କାହାରି ପ୍ରରୋଚନାରେ ପଡ଼ି ହେଉ ବା ଅନ୍ୟ କୌଣସି ବାଧ୍ୟ ବାଧକତାରେ ହେଉ ଯୁଦ୍ଧ କରନ୍ତି, ଆଘାତ ପାଆନ୍ତି, ଲହୁ ଲୁହାଣ ହୁଅନ୍ତି, ସେଥିରେ ମୁଣ୍ଡ ଫାଟେ, ଶିଙ୍ଗ ଭାଙ୍ଗେ ସେତେବେଳେ ତାକୁ....

କିନ୍ତୁ ଶୀଳା ସେତେବେଳେ ତାକୁ ସେ କଥା କହି ପାରିଲାନି। ଶନ୍ତୁ ଯଦି ଆଉ ଥରେ ପଚାରି ଦିଏ ତା ବାପା କଥା? ପରମଜିତ୍ କଥା? କାହିଁକି ସେ ଆସୁନି ବୋଲି ପଚାରେ? ସେ କେମିତି କହିବ ଯେ ସେଇଟା ଖେଳ ନୁହେଁ? ଗୋଟାଏ ପ୍ରରୋଚିତ ଯୁଦ୍ଧ। ଯେଉଁଥିରେ ମଣିଷ ବି ମେଣ୍ଢା ପାଲଟି ଯାଏ, ଗୋଟାଏ ଅନନ୍ତ କାଳ ପର୍ଯ୍ୟନ୍ତ ଲମ୍ୱି ଲମ୍ୱି ଯାଉଥିବା କିଛି ମଣିଷଙ୍କର ଅନ୍ୟକୁ ଅଧିକାର କରିବା, ଅନ୍ୟକୁ ବଶ କରିବାର ଅଦମ୍ୟ ଲାଳସା ପାଖରେ।

"ଶୀଲା ବେଟୀ! ଆଓ ଇଧର"

ଶୀଲା ଚମକି ପଡ଼ିଲା । ତା ଶାଶୂ ତାକୁ ଡାକୁଚନ୍ତି । କିନ୍ତୁ ଶୀଲା ଯାଇ ତାଙ୍କଠି ପହଞ୍ଚିବା। ପୂର୍ବରୁ ସେ ନିଜେ ଆସି ଶୀଲା ପାଖରେ ପହଞ୍ଚି ଗଲେ । ସେ ଶୀଲାକୁ ଆଙ୍କଟି କହିଲେ ପୁଅ ଯଦି ଯୁଦ୍ଧ କଥା ପଚାରୁଚି, ତାକୁ କହି ଦଉନୁ ? ମାଆକୁ ଯଦି ଯୁଦ୍ଧ କଥା କହିବାକୁ ଭୟ ଲାଗେ ତେବେ ପୁଅ ମନରୁ ସେ ଭୟ ଦୂର ହେବ କେମିତି ?

ଶୀଲା ଅଟକି ଗଲା । ଆଜି ଯାହାକୁ ସେ ଶାଶୂ ରୂପରେ ଦେଖୁଚି ସେ ଦିନେ ମାଆ ଥିଲେ । ମାଆର ଭୂମିକାରେ ଅବତୀର୍ଣ୍ଣ ହେଲାବେଳକୁ ତାଙ୍କୁ ହୋଇଥିଲା ମାତ୍ର ୨୬ ବର୍ଷ ଏବଂ ତାଙ୍କର ଏକମାତ୍ର ପୁତ୍ର ଭୂମିଷ୍ଠ ହେବା ପୂର୍ବରୁ ତାଙ୍କ ସ୍ୱାମୀ ନିଖୋଜ ହୋଇ ଯାଇଥିଲେ ଆଉ ଏକ ଭୟାବହ ସମର ପ୍ରାଙ୍ଗଣରେ । ଆଜିଯାଏ ସେ ସେହି ନିଖୋଜ ତାଲିକାରେ ।

ଶୀଲା ଶାଶୂଙ୍କୁ ଦେଖିଲା । ସେ ସମୟର ତେଜୋମୟ ଦେହ ତାଙ୍କର ଏବେ ବି ଜଳୁଚି । ଏବେ ବି ଯେମିତି ପ୍ରତ୍ୟେକ ଅଙ୍ଗ ପ୍ରତ୍ୟେଙ୍ଗ, ମୁଖ ମଣ୍ଡଳ, କେଶବାସ ସବୁଠି ଔଜଲ୍ୟର ଉନ୍ମୁକ୍ତ ଆକାଶ ଭାଙ୍ଗିପଡୁଛି । ଉଭର ପଚାଶର ପରିପୂର୍ଣ୍ଣ ସହର ଏବେ ମଧ୍ୟ ଉଦ୍‌ଗ୍ରୀବ ହୋଇ ଅପେକ୍ଷା କରିଚି କେଉଁ ଏକ ସୁନ୍ଦର ସ୍ୱପ୍ନକୁ ସ୍ୱାଗତ ଜଣେଇବାକୁ । ଆଦ୍ୟ ଯୌବନର ମାଆର ଧାନ୍ଧାମତା ଓ ଏବର ଶାଶୂର ସ୍ଥବିରତା ଉଭୟ ମିଶି ତାଙ୍କୁ ଭିନ୍ନ ଭିନ୍ନ ମାଧୂର୍ଯ୍ୟର ମହିମାରେ ମହିମାନ୍ୱିତ କରି ପକାଉଛନ୍ତି ।

"ତୁ ଯୁଦ୍ଧକୁ ଭୟ କରୁଚୁ ?"

"ନା ମାଆ ।"

ଶୀଲା ମୁହଁ ଫେରେଇନେଲା । ସତ୍ୟକୁ ସାମ୍ନା କରିବାର ସାହସ ମଣିଷ ଯେତେବେଳେ ହରେଇ ବସେ ସେତେବେଳେ ସତ୍ୟର ନାଁ ଶୁଣିଲେ ହିଁ ସେ କଥାଟାକୁ ବାଆଁରେଇ ଦିଏ । ଆଡ଼େଇ ଦେଇଯାଏ । ସତେ ଅବା ସେ ସତ୍ୟକୁ କେବେ ଦେଖିନି କି ଚିହ୍ନିନି ।

ସତରେ ଜଣଣ ଶୀଲା କହି ପାରିବ ଯେ ଯୁଦ୍ଧକୁ ସେ ଭୟ କରେନା ? ସେ କହି ପାରିବ ଯୁଦ୍ଧଟା ଗୋଟାଏ ଖେଳ ? ଯାହା ଶତ୍ରୁ ଏବେ ପଚାରୁଛି ?

ଶୀଲା ଦେଖିଲା ଶାଶୂଙ୍କ ଦେହରେ ଆଜି ସ୍ୱାମୀ ହରେଇଥିବା ତିରିଶ ବର୍ଷ ପରେ ମଧ୍ୟ ଯୁଦ୍ଧର କ୍ରୁରତା ବାଗୁଡ଼ି ଖେଳୁଛି । ତାଙ୍କ ଦେହ ଓ ମନର ଛନ୍ଦ୍ରେ ଛନ୍ଦ୍ରେ ତରଙ୍ଗାୟିତ ହେଉଛି ଯୁଦ୍ଧର ଅମାନବିକ ଅତ୍ୟାଚାର । ସବୁଠି ରାଜତ୍ୱ କରୁଛି ଯୁଦ୍ଧୋତ୍ତର ପୃଥିବୀର କିମ୍ଭୂତ କିମାକାର ଇତିହାସର ଛିନ୍ନ ପୃଷ୍ଠାଗୁଡ଼ିକ । ସେଥିରେ ହିରୋସୀମା ଠାରୁ ହିମାଳୟ ପର୍ଯ୍ୟନ୍ତ ଏବଂ ବର୍ଲିନ ଠାରୁ ବଙ୍ଗୋପସାଗର ପର୍ଯ୍ୟନ୍ତ ସବୁଠି ବିରାଜମାନ କରୁଛି ମଣିଷର ଇତିହାସର ଶେଷ ଫସିଲ । ସଭ୍ୟତାର ପ୍ରସ୍ତରୀଭୂତ ପିରାମିଡ଼ ସମୂହ ।

ଶୀଲା ଏବେ ବି ଶୁଣୁଛି ତା ଶାଶୁ ନିଦରେ ଶୋଇଥିଲାବେଳେ ବିଳି ବିଳେଇ କହନ୍ତି "ଶୀଘ୍ର ଆସିବ ବୋଲି କହିଥିଲା, ଏତେ ଡେରି ହେଲା ଯେ? ମୁଁ ଏଠି ଏକୁଟିଆ- ଏକାନ୍ତ ଏକୁଟିଆ।" ସେଇ ଶାଶୁ ସେଦିନ ପରମଜିତ୍‌କୁ ମଧ୍ୟ ଭୋର୍ ସକାଳୁ ମୋ ପାଖରୁ ଉଠେଇ ଦେଇ କହିଲେ, "ଆରେ ପୁଣି ଥରେ ସେଠି କଅଣ ଖୁଟ୍‌ଖାଟ୍ ଲାଗି ଗଲାଣି। ତୋ ଛୁଟି ବୋଧେ ଏବେ ବାତିଲ ହୋଇଯିବ।" ଟିକିଏ ରହି ସେ ପୁଣି କହଲେ, "ତୁ ଯିବାକୁ ମନେ ମନେ ପ୍ରସ୍ତୁତ ହୋଇ ଯାଆ।" ତାଙ୍କ କଣ୍ଠ ଥର ଥର ହୋଇ ଆସୁଥିଲା। "ଏଥର ତୁ ଗଲେ ତାଙ୍କୁ ଆଉ ଟିକିଏ ଖୋଜିବୁ ତ? ବରଫର ପାହାଡ଼ ଭିତରେ, କି ଘଞ୍ଚ ଜଙ୍ଗଲ ଭିତରେ ସେ ଏକୁଟିଆ ଲଢ଼େଇ କରୁ କରୁ ବୋଧେ ହାଲିଆ ହୋଇ ଶୋଇ ପଡ଼ିଥିବେ କି କଅଣ। କିଏ କାହିଁକି ଅନ୍ୟକୁ ସେଠି ଖୋଜିବ ଯେ?"

ସୃଷ୍ଟିର ସମସ୍ତ ମହନୀୟତାକୁ ନେଇ ଯେଉଁ ମାଆଟି ଗର୍ବରେ ଫୁଲି ଉଠେ, ସେ ପୁଣି କେମିତି କେଜାଣି ତା' ନିଜ ସୃଷ୍ଟିକୁ ଧ୍ୱଂସ ମୁହଁକୁ ଠେଲି ଦେଇପାରେ? କେମିତି ଏ କଥା ସମ୍ଭବ ହୁଏ? ଜନନୀ ଓ ଜନ୍ମଭୂମି ଭିତରେ କେଉଁ କାଳରୁ ଏମିତି ଏକ ସାଲିସ ବିହୀନ ସର୍ତ୍ତ ମଣିଷ ରଖି ଆସିଚି ଯେ ସେଥିରେ ସବୁବେଳେ ଜନନୀ ଭିତରେ ଜନ୍ମଭୂମି ଓ ଜନ୍ମଭୂମି ଭିତରେ ଜନନୀର ପରିପ୍ରକାଶ ଦେଖାଯାଏ। ଦେଖିବାକୁ ଏ ଦୁଇଟି ଗୋଟିଏ। ଗୋଟିଏ ପୁଣି ଦୁଇଟି ହୋଇଯାଏ। ଜଣେ ଅନ୍ୟକୁ ରକ୍ଷା କରିବାର ଦୁର୍ବାର କ୍ଷମତାର ଅଧିକାରୀ।

ଶାଶୁ ଶୀଲା ପାଖକୁ ଲାଗି ଆସିଲେ। "ମାଆ ଓ ମାଟି ଏ ଦୁଇଟିରୁ ତୁ କାହାକୁ ଅଲଗା କରି ପାରିବୁ ଝିଅ? କାହାକୁ ଛୋଟ କି ବଡ଼ କରିପାରିବୁ?"

ଶୀଲା ଆଖିରୁ ଲୁହ ପୋଛିଲା।

ଶାଶୁ ତା ଚିବୁକରେ ହାତଦେଇ ଉପରକୁ ଟେକି ଧରିଲେ। "ମୋତେ ଦେଖିଲୁ। ମୋ ଦେହ ମୁହଁ ଓ ଛାତିରେ ହାତ ମାରି ଦେଖିଲୁ।" ସେ ଶୀଲାର ହାତଟାକୁ ଆଣି ନିଜ ଛାତିରେ ଚାପି ଧରିଲେ। "ଏବେ କହିଲୁ ଏ ଦେହଟା କୋଉଥିରେ ତିଆରି? ରକ୍ତ, ମାଂସ ଅଛି ଏଥିରେ?"

ଲୁହର ପ୍ଲାବନ ଭିତରେ ଶୀଲା ତାଙ୍କୁ ଖାଲି ଦେଖୁଥାଏ ସଂପୂର୍ଣ୍ଣ ଗୋଟାଏ ଅବୁଝା ଆଖିରେ।

"ତିରିଶ ବର୍ଷ ହେଲା ଏ ଦେହ ପଥର ହୋଇଯାଇଛି। ଏବେ ବି ମୁଁ ଏକୁଟିଆ ଖରାବେଳେ ଦାଣ୍ଡ ପିଣ୍ଡାରେ ବସି ରାସ୍ତାକୁ ଅନାଏଁ। କେହି ଜଣେ ପୋଷାକ ପିନ୍ଧି ଆସୁ ଥିବାର ଦେଖିଲେ ପଥରର ଏ ଦେହଟା ଅକସ୍ମାତ କେମିତି ଜୀବନ୍ତ ହୋଇ ଉଠେ। ମଲା ଗଛର ଡାଳପତ୍ର ସବୁ କଅଁଳି ଉଠେ। ଫୁଲର ପାଖୁଡ଼ା ସବୁ କେମିତି ଫଟ୍‌ଫାଟ୍ ମେଲିଯାଏ। ଆଉ ମୁଁ, ନିସ୍ତେଜ ଓ ନିର୍ବେଦ ହୋଇ

କାନ ପାରି ଶୁଣେଁ, ମନ୍ଦିର ଓ ଗୀର୍ଜାର ଘଣ୍ଟା ସବୁ ଅଚାନକ କେମିତି ବାଜି ଉଠୁଛନ୍ତି । ମସ୍‌ଜିଦ୍‌ର ମୂର୍ଚ୍ଛନାମାନ ଆକାଶ ବତାସର ଛାତି ଥରେଇ ପ୍ରଚଣ୍ଡ କମ୍ପନ ସୃଷ୍ଟି କରୁଛନ୍ତି । ସେମାନେ ଯେମିତି କଣ୍ଠ ଫଟେଇ ଚିତ୍କାର କରି କହୁଛନ୍ତି, 'ରକ୍ଷାକର, ମୋତେ ରକ୍ଷାକର । ମୁଁ ଧରିତ୍ରୀ । ମୁଁ ପୃଥିବୀ, ମୁଁ ତୁମ ମାଆ......'

କିନ୍ତୁ ମୁଁ ଉନ୍ମାଦ ମଣିଷଟିଏ । ମୋ ଅନ୍ତରର ଆଦିମତା, ମୋ ମନର ପାଶବିକତା, ମୋର ଆରଣ୍ୟକ ଅହଂକାର ମୋତେ ବରାବର ଗୋଟାଏ ଅନ୍ଧକାର ଭିତରେ ରଖି ଆସିଛି । ସେ ଆଦିମତା ଓ ସେ ପାଶବିକତା ଭିତରେ ବଞ୍ଚିବାର ଅଦମ୍ୟ ଇଚ୍ଛା ମଧ୍ୟ ରହିଛି । ସେ ଇଚ୍ଛା ଭିତରୁ ମଣିଷ ବାହାରି ଭିନ୍ନ ସୃଜନର କଥା ଚିନ୍ତା କରି ପାରେନା ।

ଯୁଦ୍ଧ ସେଇ ଅନ୍ଧକାରର ଇତିବୃତ୍ତ । ତାର ଆଉ ଭିନ୍ନ ପରିଭାଷା କିଛି ନାହିଁ । ଆମକୁ ତାକୁ ମାନି ନେବାକୁ ପଡ଼ିବ ।''

''ମୁଁ କିନ୍ତୁ ପାରୁନି ମାଆ । ମୁଁ ମନକୁ ବୁଝେଇ ପାରୁନି । ପରମଜିତ୍ ମଧ୍ୟ ସେଇ ନିରନ୍ଧ୍ର ଅନ୍ଧକାର ଭିତରେ ହଜିଯିବ ନାହିଁ ତ ?'' ଶୀଲା କଇଁ କଇଁ ହୋଇ କାନ୍ଦି ଉଠିଲା ।

ଶାଶୁ ହସିଲେ । ପାରୁନି ବୋଲି କହିଲେ ତ ହବନି ଲୋ ମା । ତୋତେ ବାସ୍ତବତାକୁ ଗ୍ରହଣ କରି ନେବାକୁ ପଡ଼ିବ । ଯେ ପର୍ଯ୍ୟନ୍ତ ସେଇ ଅଚିହ୍ନା ଅନ୍ଧାର ଆମ ଆଗରୁ ଅପସରି ନ ଯାଇଛି ସେ ପର୍ଯ୍ୟନ୍ତ ଆମକୁ ପଥର ହୋଇ ହିଁ ବଞ୍ଚିବାକୁ ପଡ଼ିବ । ସେଥିରୁ ଆଉ ମୁକ୍ତି ନାହିଁ ।

ସେ ଶୀଲାକୁ ଛାତି ଉପରକୁ ଆଉଜେଇ ନେଲେ ଏବଂ ଅତି ସ୍ନେହରେ ତା' ପିଠି ଥାପୁଡ଼େଇବାକୁ ଲାଗିଲେ । ଦୁହିଁଙ୍କର କୋହ ଓ ଲୁହ ବାୟୁମଣ୍ଡଳରେ ମିଶି ଏକାକାର ହୋଇ ଯାଉଥିଲା ।



*(ଆଗାମୀ ଶତାବ୍ଦୀ—ପୂଜାସଂଖ୍ୟା—୧୯୯୯)*

# ହାତୀର ହିଷ୍ଟ୍ରି

ଦେଶ ସ୍ୱାଧୀନ ହେବା ଆଗର କଥା। ବିଲାତରୁ ଲର୍ଡ଼ ମାଇକେଲ ସ୍କଟ୍ ଭାରତରେ ଯୋଉ ନୂଆ କରି ସର୍କସ ଦଳଟିଏ ଗଢ଼ି ଥିଲେ ତା ନାଁ ଦେଇ ଥିଲେ 'ଇଣ୍ଡିଆନ ନେସନାଲ ସର୍କସ।' ଇମିତି ଗୋଟିଏ ନାଁ ଦେବାର ଅନେକ କାରଣ ଥିଲା। ପ୍ରଥମତଃ ସେ କାହିଁକି କେଜାଣି ଭାରତକୁ ଖୁବ୍ ବେଶି ଭଲ ପାଇ ବସିଲେ। ତାର ମାଟି, ପାଣି, ପବନକୁ ସେ ଆପଣେଇ ନେବାକୁ ଚେଷ୍ଟା କଲେ। ଭାରତର ଲୋକେ ତାଙ୍କୁ ଅତି ନିଜର, ଅତି ଆପଣାର ମନେ ହେଲା। ତେଣୁ ସେ ସର୍କସ ପାର୍ଟିର ନାଁରେ ଇଣ୍ଡିଆନ ଶବ୍ଦଟି ଯୋଡ଼ିଲେ। ଦ୍ୱିତୀୟରେ ସେତେବେଳେ ଭାରତରେ ଜାତୀୟ ଆନ୍ଦୋଳନ ମୁଣ୍ଡ ଟେକୁଥିଲା। ତେଣୁ ସେ ସେଥିରେ 'ନେସନାଲ୍' ଶବ୍ଦଟିକୁ ମଧ୍ୟ ଯୋଡ଼ିଲେ। ତାଙ୍କର କହିବାର ଉଦ୍ଦେଶ୍ୟ, ମୁଁ ତୁମର ତୁମେ ମୋର। ଭାରତୀୟମାନଙ୍କୁ ସେ ଏଇ କଥା କହିବାକୁ ଚାହୁଁଥିଲେ।

ସର୍କସ ବେଶ ଭଲ ଚାଲୁ ଥିଲା। ବିଶେଷ କରି ସର୍କସ ପାର୍ଟି ନୂଆ କରି ହେଇ ଥିବାରୁ ଗାଁ ଲୋକେ ଖାଲି ନୁହେଁ ସହରର ଲୋକ ମଧ୍ୟ I.N.C. ବା ଇଣ୍ଡିଆନ ନେସନାଲ ସର୍କସର ନାଁ ଶୁଣିଲେ ମନେ ମନେ କୁରୁଳି ଉଠୁଥିଲେ। ତାକୁ ଦେଖିବାକୁ ଶହ ଶହ ଲୋକ ପିମ୍ପୁଡ଼ି ପରି ଧାଡ଼ି ବାନ୍ଧୁଥିଲେ। ଗାଁରୁ ଲୋକେ ଚୂଡ଼ା ଚାଉଳ ବାନ୍ଧି ଦୂର ଦୂରାନ୍ତରୁ ପିଲାଛୁଆ ଧରି ଚାଲି ଆସୁଥିଲେ।

ସର୍କସର ହାତୀ ଖେଳଟା ଥିଲା ଅତି ଚମତ୍କାର। ସ୍କଟ୍ଙ୍କ ପୂର୍ବରୁ ଭାରତରେ ହାତୀର ଖେଳ କେହି ଦେଖେଇ ପାରୁ ନ ଥିଲେ। ତେଣୁ ସେ ପ୍ରଥମେ ଗୋଟିଏ ହାତୀକୁ ନେଇ ବିଲାତରେ ଟ୍ରେନିଂ ଦେଇ ନେଇ ଆସିଲେ। ତାପରେ ଦେଖ ମଜା। ସେ ହାତୀ କଅଣ ନ କଲା? ଠିକ୍ ମଣିଷଟିଏ। ବଶମ୍ୱଦ ଅଫିସରଟିଏ ପରି ସର୍କସ ମାଲିକର ଯେ କୌଣସି ଆଦେଶକୁ ସେ ତୁରନ୍ତ ପାଳନ କରେ। ହାତୀ ଆସିବ, ଚେଆରରେ ବସିବ, ଟେବୁଲ ଉପରେ ନିଜ ଟୋପିଟା ଖୋଲି ରଖିବ, ଆଖିରେ ଚଷମା ଲଗେଇବ ଏବଂ ତାପରେ ଫାଇଲ ଗୋଟିକ ପରେ ଗୋଟିଏ ଦେଖି ଚପରାସିକୁ ଦେବ। ଏ ସବୁ ହାତୀର ଖେଳ ପ୍ରଚୁର କୌତୁହଳ ସୃଷ୍ଟି କରେ। ପିଲା କଅଣ ବୁଢ଼ା କଅଣ ସମସ୍ତେ ଦେଖି ତାଟକା ହେଇ ଯାଆନ୍ତି। ଖେଳରେ ହାତୀର ଚପରାସି କେତେବେଳେ ଗୋଟିଏ ଛେଳି କିମ୍ବା ଆଉ କେତେବେଳେ ମାଙ୍କଡ଼ଟିଏ।

ଏମାନେ ମଧ୍ୟ ତାଙ୍କ ଅଭିନୟ ଅତି ସୁନ୍ଦର କରନ୍ତି। ଚପରାସି ତା କାନ୍ଧରେ ଗାମୁଛାଟିଏ ପକେଇ ଆସି ହାତୀକୁ ସଲାମ କରେ ଏବଂ ତାପରେ ଫାଇଲି ନେଇ ଚାଲିଯାଏ।

ଏସବୁ ଖେଳ ଦେଖିବାକୁ ସେତେବେଳେ ଯେମିତି ଲୋକ ହେଉଥିଲେ ସେମିତି ଖେଳର ମାଲିକ ସ୍କଟ୍‌ଙ୍କୁ ଦେଖିବାକୁ ମଧ୍ୟ କମ ଲୋକ ହେଉ ନ ଥିଲେ। ଲୋକେ ଭାବୁଥିଲେ ଆହା କେତେ ବ୍ରେନ ଖର୍ଚ୍ଚ ନ କରିଚି। ସେମିତିକା ମସଲା ଅଛି ବୋଲି ସିନା ଏତେ ପଶୁଙ୍କୁ ଅକ୍ତିଆର କରି ତାଙ୍କୁ ଟ୍ରେନିଂ ଦେଇ ଏମିତି ଦଳଟିଏ ଗଢ଼ି ପାରିଚି।

ହଠାତ୍ ଦିନେ ଭାରତ ସ୍ୱାଧୀନ ହେଇଗଲା। ସମସ୍ତେ ସ୍ୱାଧୀନତା ପାଇ ଗଲେ। ଦେଶ ଭିତରେ ଗୋଟାଏ ଅଭୂତପୂର୍ବ ଜାଗରଣ ଦେଖାଗଲା। ସବୁଠି କେମିତି ଗୋଟାଏ ଅହେତୁକ ଉନ୍ମାଦନା ସମୁଦ୍ରର ଜୁଆର ପରି ଚାରିଆଡ଼େ ମାଡ଼ିଗଲା। ସମସ୍ତେ ଯେମିତି ଗୋଟାଏ ନୂତନ ଜନ୍ମ ପାଇଲେ।

ଅନେକଙ୍କର ଧାରଣା ହେଲା ସର୍କସ ଦଳ ଭାଙ୍ଗିଯିବ। ସ୍କଟ୍ ନିଜେ ମଧ୍ୟ ଏ ମତ ପ୍ରକାଶ କଲେ ତାଙ୍କ ବଂଧୁମାନଙ୍କ ଗହଣରେ। ସେ କହିଲେ ସେ ଆଉ ଇଣ୍ଡିଆରେ ରହିବାକୁ ଚାହାନ୍ତିନି। ସେ ତାଙ୍କ ନିଜ ଦେଶକୁ ଫେରିଯିବେ। ସେଠି ସେ ତାଙ୍କ ଜୀବନର ଶେଷ ସମୟତକ ନିଜ ପରିବାର ସହିତ କଟେଇବେ।

ତେବେ କଅଣ ସର୍କସ ଦଳ ଭାଙ୍ଗିଯିବ ?

ସେ କହିଲେ ହଁ। ମୁଁ ଆଉ ଏ ନିରିହ ପଶୁମାନଙ୍କୁ ଆବଦ୍ଧ କରି ରଖିବାକୁ ଚାହେଁନା। ସେମାନଙ୍କୁ ସବୁ ମୁଁ ମୁକ୍ତ କରି ଦେବି।

ମୁକ୍ତ କରି ଦେବେ ? ବାଘ, ଭାଲୁ, ହାତୀ ଏମାନଙ୍କୁ ଆପଣ ମୁକ୍ତ କରି ଦେବେ ? ସେମାନେ ମଣିଷ ସମାଜ ରଖିବେ ତ ?

ସ୍କଟ୍ କହିଲେ ତୁମେ ସେମାନଙ୍କୁ ଭୁଲ ବୁଝୁଚ। ସେମାନେ ମୁକ୍ତ ହେଲେ ତମର କିଛି କରିବେ ନି। ବରଂ ତମର ବେଶି ଉପକାର କରିବେ।

ଟିମ୍ ମେନେଜର ଯେ କି ଏ ଯାଏ ଏ କଥା ବସି ଚୁପ୍‌ଚାପ୍ ଶୁଣୁ ଥିଲେ, ସେ ଟିକେ ହସି ଦେଲେ।

ତାଙ୍କ ହସ ସ୍କଟ୍‌ଙ୍କୁ ବଡ଼ ବାଧିଲା। ସେ କହିଲେ ହସିଲ ଯେ ? କିନ୍ତୁ ଏତିକି ମନେ ରଖ ଜଣେ ମଣିଷ ତୁମର ଯେତିକି କ୍ଷତି କରେ ଗୋଟିଏ ପଶୁ ତୁମର ତାଠୁ ଅନେକ କମ୍ କ୍ଷତି କରେ। ତମର ବୁଝିବାର ଶକ୍ତି ଅଭାବରୁ ବା ତୁମର ଅନ୍ତର୍ଦୃଷ୍ଟି ଅଭାବରୁ ତମେ ସେ କଥା ଜାଣି ପାରନା।

ମେନେଜର ବାବୁ ସ୍କଟଙ୍କ ସାମନାରେ କେବେ ପାଟି ଫିଟେଇ ନଥିଲେ। ଏବେ ଯିବା ଦିନ ଆଗତ ହେବାରୁ ଟିକିଏ ଟିକିଏ ସାହସ ବାନ୍ଧି ସାମନାକୁ ଆସୁଚନ୍ତି ଏବଂ କଥା କହୁଚନ୍ତି। ସେ ଆଉ କିଛି କହିଲେନି।

ପରଦିନ ସକାଳେ ସ୍କଟ ସାହେବ ତାଙ୍କର ସମସ୍ତ କର୍ମଚାରୀଙ୍କୁ ଡାକି କହିଲେ ଆଜିଠାରୁ I.N.C ବା ଆମ ସର୍କସ ଦଳ ଭାଙ୍ଗିଗଲା। ଆଜିଠୁ ଆମର ଆଉ ଖେଳ ହେବ ନାହିଁ। ତମେ ସମସ୍ତେ ଆଜିଠୁ ମୋଠୁ ଛୁଟି ପାଇଲ। ତମେ ସବୁ ନିଜ ନିଜ ଘରକୁ ଯାଇ ପାର।

ହଠାତ୍ ଜଣେ ପଚାରିଲା, ସାହେବ, ଆପଣ? ଆପଣ ଆମ ଦେଶରେ ରହିବେ ନା ନିଜ ଦେଶକୁ ଫେରି ଯିବେ? ସାହେବ କହିଲେ ନାଁ, ମୁଁ ମୋ ନିଜ ଦେଶକୁ ଫେରିଯିବି। ସେ ଆଖିରୁ ଲୁହ ପୋଛିଲେ। ଲୋକମାନେ ଚାଲିଗଲେ।

ସ୍କଟ ସାହେବ ଗୋଟିଏ ଚେଆରରେ ସେମିତି ବସି ଥାଆନ୍ତି। ସେ ଯେ ଏମିତି ଗୋଟାଏ ଭାବ ବିହ୍ୱଳ ଅବସ୍ଥାରେ ପହଞ୍ଚିବେ ଏକଥା ସେ ମୋଟେ ଭାବି ପାରୁ ନଥିଲେ। ସେ ନିଜକୁ ଯେତେ ବୁଝେଇବାକୁ ଚେଷ୍ଟା କଲେ ମଧ୍ୟ ପାରୁ ନ ଥିଲେ। ତାଙ୍କ ଅଜାଣତରେ ଗୋଟିଏ କୋହ ତାଙ୍କ ଛାତି ଥରେଇ ଉପରକୁ ମାଡ଼ି ପଡୁଥିଲା।

ଆଖିରୁ ଲୁହ ପୋଛି ସେ ଠିଆ ହେଇ ପଡ଼ିଲା ବେଳକୁ ଦେଖିଲେ ତାଙ୍କ ସାମନାରେ ଠିଆ ହେଇଛି ହାତୀ। ହାତୀ ଦଳର ଶ୍ରେଷ୍ଠ। ହାତୀମାନଙ୍କର ଗୁରୁ। ତା ଆଖିରେ ଦୁଇ ଧାର ଲୁହ। ସେ ପଥର ପରି ଠିଆ ହେଇ ଅନେଇଚି ସ୍କଟଙ୍କୁ।

ସ୍କଟ୍ ଆଉ ନିଜ କୋହ ସମ୍ଭାଳି ପାରିଲେନି। ସେ ଦୌଡ଼ି ଗଲେ ହାତୀ ପାଖକୁ। ତା ମୁହଁ ପାଖରେ ମୁହଁ ଲାକି କଇଁ କଇଁ ହେଇ କାନ୍ଦି ଉଠିଲେ। ତାପରେ ଅନେକ ସମୟ ପରେ ନିଜକୁ ସମ୍ଭାଳି ନେଇ ସେ ତାର ବେକ ଓ ମୁହଁକୁ ଆଉଁସି ଦେଇ ଚାପା ଗଳାରେ କହିଲେ, ତୁ ଟିକିଏ ବୁଝିବାକୁ ଚେଷ୍ଟା କର। ତମ ଦେଶ ତ ସ୍ୱାଧୀନ ହେଇଗଲା। ଆଉ ମୁଁ କାହିଁକି ରହିବି? ମୁଁ ଚାଲି ଯାଉଚି। ତୁ ଏଠି ରହିବୁ। ତୁ ଏଣିକି ସ୍ୱାଧୀନ। ତୋ ଉପରେ ଅାଙ୍କୁଶ ଚଲେଇବାକୁ କେହି ନାହିଁ। ତୋତେ ଆକଟିବାକୁ, ତୋତେ ମଣ କରିବାକୁ ଏଠି ଆଉ କେହି ନାହିଁ। ତୁ ଏଣିକି ତୋ ନିଜର ରାଜା। ତୁ ତ ନିଜ କଥା ବୁଝିବୁ। ତୁ ତ ନିଜ ପାଇଁ ଯାହା ଭଲ ଭାବିବୁ କରିବୁ। ଏତେ ଦିନ ଯାଏ ତୁ ମୋ ପାଇଁ କରୁଥିଲୁ।

ତାପରେ ସେ ତା କାନ ପାଖକୁ ମୁହଁ ଆଣି କହିଲେ, ତୁ ଏଣିକି ମୁକ୍ତ। ତୋ ଗୋଡ଼ରେ ଚେନ ବନ୍ଧା ଯିବନି। ତୁ ପୂର୍ଣ୍ଣ ସ୍ୱାଧୀନ। ତୁ ଜଙ୍ଗଲରେ ରହି ପାରୁ। ଜନ ବସତି ଭିତରେ ମଧ୍ୟ ରହି ପାରୁ। ତୋତେ ଯେତିକି ଖିଆ

ଦିଆ ଯାଇଛି ବା ଯେତିକି ଗୁଣ ଗାରିମା ତୋଠି ଅଛି ସେତିକି ଯଥେଷ୍ଟ। ଟ୍ରେନିଂ ତୁ ପାଇ ସାରିଛୁ। ଆଉ ଡର କଅଣ ? ଭଗବାନ କରନ୍ତୁ ତୋର ବିଶାଳ ପେଟ ଆହୁରି ବଡ଼ ହେଉ। ଏ ଦାନ୍ତ ଆହୁରି ଶକ୍ତ ହେଉ। ଏ ଆଖି ଆହୁରି ତୀକ୍ଷ୍ଣ ହେଉ। ଏ ମସ୍ତିଷ୍କ ଆହୁରି ଧୀମାନ ହେଉ। ଆଉ ତୋର ଏ ପାଦ ତଳେ ଗୋଟିଏ କାହିଁକି କୋଟି କୋଟି ପିମ୍ପୁଡ଼ି ଚିପି ହେଇ ଯାଆନ୍ତୁ। ସେଥିକୁ ଭ୍ରୂକ୍ଷେପ କରିବୁନି। ତୋର ଏ ଚମଡ଼ା ଆହୁରି ମୋଟା ହେଉ ସହସ୍ର ବାଣକୁ ସମ୍ଭାଳି ନେବା ପାଇଁ। ହଁ, କିନ୍ତୁ ଗୋଟିଏ କଥା ମନେ ରଖିବୁ, ତୋର ଏ ପିଠିଟାରେ କେବଳ ତୋଠୁ ଶକ୍ତିଶାଳୀ/ବୁଦ୍ଧିମାନ ଜୀବ ଛଡ଼ା ଆଉ କାହାକୁ ବସେଇବୁନି। ତାପରେ ସାହେବ ତା ଗାଲରେ ଚୁମାଟିଏ ଦେଇ କହିଲେ, ମୋ କଥା ଭୁଲିବୁ ନାହିଁଟି।

ହାତୀ ସ୍କଟ ସାହେବଙ୍କୁ ସେଲ୍ୟୁଟ୍ କଲା ଏବଂ ପଛକୁ ଫେରି ଚାଲି ଗଲା। ଏ ସବୁ ଆଖି ଦେଖା କଥା।

ସର୍କସ ଭାଙ୍ଗିଗଲା। ସ୍କଟ୍ ସାହେବ ଚାଲିଗଲେ। କିନ୍ତୁ ସର୍କସରେ ଯେଉଁ ଲୋକମାନେ ଚାକିରି କରୁଥିଲେ ସେମାନଙ୍କ ମନରେ ଭାଲେଣି ପଡ଼ିଲା। ସେମାନେ ଏବେ କରିବେ କଅଣ ? ସର୍କସରେ ଖେଳ ଦେଖେଇ ସେମାନେ ପେଟ ପୋଷୁଥିଲେ। ସେଥିରୁ ସେମାନେ ବଞ୍ଚୁ ଥିଲେ ଏବଂ ପିଲା ପରିବାରକୁ ମଧ୍ୟ ବଞ୍ଚାଉ ଥିଲେ।

ଆକାଶରେ ଲୋଟଣୀ ପାରା ପରି ଓଲଟିବା, ଦଉଡ଼ିରେ ଝୁଲି ଝୁଲି ଟାରଜନ୍ ପରି ଗୋଟିଏ ଖୁଣ୍ଟକୁ ଡେଇଁ ଯିବା ଏ ସବୁ ଖେଳତ ଲୋକଙ୍କୁ ଆକର୍ଷି ଆଣୁଥିଲା। ସେମାନେ ଏ ଖେଳ ଦେଖି ପଇସା ଫୋପାଡୁଥିଲେ।

ତା' ଛଡ଼ା ସ୍କଟ ସାହେବ ଗୁଡ଼ିଏ ଜୋକର ସୃଷ୍ଟି କରିଥିଲେ। ସେମାନେ ପୁଣି ପାଞ୍ଚ ସାତ ମିନିଟରେ ରଂଗ ବେରଙ୍ଗର ପୋଷାକ ବଦଳେଇ କେତେ ମଜା କଥା କହି ଲୋକଙ୍କ ମନ ମୋହି ନେଉଥିଲେ। ଏବେ ସେମାନେ କରିବେ କଅଣ ?

ଦିନେ ସଂଜ ବେଳେ ସେମାନେ ଗୋଟିଏ ମିଟିଂ କଲେ। ସେ ମିଟିଂରେ ହାତୀର ମାହୁନ୍ତ ନେତୃତ୍ୱ ନେଲା। ସେ କହିଲା ସ୍କଟ ସାହେବ ଚାଲି ଗଲେ ବୋଲି ଆମେ ବି କଅଣ ଦେଶ ଛାଡ଼ି ପଳେଇବା ? ତେବେ ଆମର ଆଉ ନିଜତ୍ୱ କଅଣ ରହିଲା। ଆମେ କଅଣ ଆମ ଗୋଡ଼ରେ ଠିଆ ହୋଇ ପାରିବାନି ? ଆମେ କଅଣ ଆମ ନିଜ କଥା ବୁଝି ପାରବାନି ? ହେଇ ଦେଖୁନ ଆମ ନେତାମାନେ କେମିତି ଦେଶ ଚଳଉଛନ୍ତି। ଆମେ କିଆଁ ତାଙ୍କ ପରି କାମ କରି ପାରିବାନି। ଆମେବିତ ତାଙ୍କରି ପରି ମଣିଷ। ତାଙ୍କରି ପରି ଯଦି ବିଦ୍ୟା ବୁଦ୍ଧି ଅଛି ତେବେ ଆମେ କାହିଁକି ଆମର ଏ ସର୍କସଟାକୁ ଚଳେଇ ପାରିବାନି ?

କଥାଟା ଆଉ କାହା ମନକୁ ପାଉ କି ନପାଉ ଜୋକର ମନକୁ ବେଶ ପାଇଲା। ସେ ତାର ତିନି ଫୁଟିଆ ଶରୀର ନେଇ ବସିଥିବା ଜଣେ ଲୋକର ପଛ ପଟୁ ଠିଆ ହେଇ କହିଲା, ମୋତେ ସମସ୍ତେ ଦେଖୁଚ କି? ଭାଇମାନେ, ହେଇ ମୁଁ ଏଇଠି ଠିଆ ହେଇଚି। ସେ ହାତ ଦି'ଟା ଉପରକୁ ଟେକି ଦେବାରୁ ସମସ୍ତେ ତାଆଡ଼କୁ ଅନେଇଲେ। ତାପରେ ସେ କହିଲା ମୋର ମୋ ନିଜ ଉପରେ ବିଶ୍ୱାସ ଅଛି। ଦେଖୁଚ ସିନା ମୁଁ ନିହାତି ଛୋଟ ମଣିଷଟିଏ, କିନ୍ତୁ ମୁଁ ରସ ରସିଆ କଥା କହି ସମସ୍ତଙ୍କ ମନ କିଣି ପାରିବି।

ସର୍କସରେ ମେଜିକ୍ ଖେଳ ଦେଖାଉଥିବା ଲୋକଟି ଉଠି ପଡ଼ି କହିଲା, ମୁଁ ବି ପାରିବି। ଗୋଟାଏ ମିନିଟରେ ମୁଁ ପାଞ୍ଚଟା ରଂଗ ତିଆରି କରି ପାରିବି। ଇନ୍ଦ୍ରଜାଲବି ମୋତେ ଜଣା ଅଛି। ଅନ୍ଧ ପୁଟୁଳି ବାନ୍ଧି ନିମିଷକେ ମୁଁ ଧଳାକୁ କଳା ଓ କଳାକୁ ଧଳା କରି ଦେଖେଇ ଦେଇ ପାରିବି। ତେବେ ଆଉ ଚିନ୍ତା କଅଣ?

ଏମିତି ଭାବରେ ବହୁ ଯୁକ୍ତିତର୍କ ଓ ଅଲୋଚନା ପରେ ଶେଷରେ ଠିକ୍ ହେଲା ଯେ ସେମାନେ ନୂଆ ସର୍କସ ଦଳଟିଏ ଗଢ଼ିବେ। କିନ୍ତୁ ପୁରୁଣା ସର୍କସ ଦଳରେ ହାତୀ ଥିଲା ଲୋକଙ୍କର ପ୍ରଧାନ ଆକର୍ଷଣ। ତେଣୁ ଏ ନୂଆ ଦଳରେ ମଧ୍ୟ ସେଇ ହାତୀକୁ ସେମାନେ ପୁରୋଭାଗରେ ରଖିବେ। ସେମାନେ ଏଇ ବୁଝାମଣାରେ ଉପନୀତ ହେଲେ ଯେ ହାତୀହିଁ ହେବ ସେ ସର୍କସର ମୁଖ୍ୟ।

ଏତିକିବେଳେ ଆଉ ଜଣେ କହିଲା ଭାଇମାନେ, ହାତୀ ଆମର ପ୍ରତୀକ। ହାତୀ ଆମେରିକାରେ ଅଛି। ଇଂଲଣ୍ଡରେ ମଧ୍ୟ ଅଛି। ଅଛି ଜାପାନରେ। ଅଛି ଆଫ୍ରିକା ଓ ବ୍ରହ୍ମଦେଶରେ। ହାତୀତ ସବୁ ଟ୍ରେନିଂ ପାଇଚି। ସବୁ ଖାଦ୍ୟ ଖାଇଚି। ସବୁ ଜାଣିଚି। ତା ପେଟରେ ସବୁ ବିଦ୍ୟା ଅଛି। ତେଣୁ ସେ ଆମର ସମଗ୍ର ବିଶ୍ୱ। ଆମେ ସଂକୀର୍ଣ୍ଣତାରେ ବିଶ୍ୱାସ କରୁନା। ହାତୀ ପବିତ୍ର। ସେ ବିଶାଳ, ସେ ମହାନ। ତେଣୁ ସେ ହେବ ଆମ ଜୀବିକାର୍ଜନର ମୂଳ ମନ୍ତ୍ର।

ଏ କଥାଟି ସମସ୍ତଙ୍କ ମନକୁ ପାଇଲା।

ବହୁ ବିଚାର ବିମର୍ଷ ପରେ ନୂଆ ସର୍କସ ଦଳର ନାଁ ରଖାଗଲା 'ନେସନାଲ ସର୍କସ ଅଫ ଇଣ୍ଡିଆ।' ଯେହେତୁ ଦଳଟା ନୂଆ ତେଣୁ ସେମାନେ ଗୋଟିଏ ଛୋଟ ଦଳ ଗଢ଼ିଲେ। ସେମାନେ କହିଲେ ଆମ ହାତରେ ବେଶି ପୁଂଜି ନାହିଁ। ତେଣୁ କମ ମୂଳଧନରେ କାମ ଆରମ୍ଭ କରିବା। ସେମାନେ ଠିକ୍ କଲେ ଯେ ଦଳରେ କେବଳ ଗୋଟିଏ ହାତୀ, ଗୋଟିଏ ଘୋଡ଼ା, ଗୋଟିଏ ଗଧ, ଗୋଟିଏ ଭାଲୁ, ଗୋଟିଏ କୁକୁର, ଗୋଟିଏ ମାଙ୍କଡ଼ ଏବଂ ପକ୍ଷୀମାନଙ୍କ ଭିତରେ ଗୋଟିଏ ଶୁଆ ଓ ଗୋଟିଏ ଶାଗୁଣା ରହିବ। (ନିରାମିଷାଷି ଶାଗୁଣାଟି ବେକରେ ରୁଦ୍ରାକ୍ଷମାଳ ପକେଇ ଠାକୁର ପୂଜା କରିବା ସର୍କସରେ ପିଲା ମାନଙ୍କର ବଡ଼ ପ୍ରିୟ ଖେଳ ଥିଲା।)

ମଣିଷମାନଙ୍କ ଭିତରେ ମାହୁନ୍ତକୁ ଛାଡ଼ିଦେଲେ ଗୋଟିଏ ଅତି ଲମ୍ବା ମଣିଷ, ଗୋଟିଏ ବାମନ, ଗୋଟିଏ ଅତ୍ୟନ୍ତ ମୋଟା ଏବଂ ଆଉ ଗୋଟିଏ ଅତି ସୁକୁଟା ମଣିଷ ନୂଆ ସର୍କସ ଦଳରେ ରହିଲେ। ପୁରୁଣା ସର୍କସରେ ସୁକୁଟା ଲୋକଟା ଉପରେ ମୋଟା ଲୋକଟା ଚଢ଼ି ଯେତେବେଳେ ଚାରିପଟେ ବୁଲୁଥିଲା ସେତେବେଳେ ସୁକୁଟା ଲୋକଟା ମୋଟା ଲୋକର ଭାର ସମ୍ଭାଳି ନପାରି ଚେପା ହେଇ ଯାଉଥିଲା ବେଳେ ମୋଟା ଲୋକଟା ଆରାମରେ ହସି ହସି ନିଜର ଦୁଇ ଫୁଟିଆ ନିଶକୁ ସାଉଁଳୁ ଥିବାର ଦୃଶ୍ୟ ପ୍ରବଳ ହାସ୍ୟ ସୃଷ୍ଟି କରୁଥିଲା।

ପୁରୁଣା ସର୍କସ ଦଳରେ ଗୋଟିଏ ମାଇଚିଆ ଥିଲା। ସେ କହିଲା, ଭାଇମାନେ ମୋତେବି ସାଥିରେ ରଖ, ନହଲେ ମୁଁ ଯିବି କୁଆଡ଼େ। ମୁଁ ତ ତୁମମାନଙ୍କର ସବୁ କାମ କରିଦେବି। ତେବେ ମୋତେ କିଆଁ ନ ନବ ?

ଅଗତ୍ୟା ଅନ୍ୟମାନେ ରାଜି ହେଲେ। ମାଇଚିଆଟି ମଧ୍ୟ ନୂଆ ଦଳରେ ମେମ୍ବରସିପ୍ ପାଇଲା। କିନ୍ତୁ ସର୍ତ୍ତ ହେଲା ଯେ ସେ ଯା ତମ୍ବୁ, ତା ତମ୍ବୁ ହେବନି। ଗୋଟିଏ ତମ୍ବୁରେ ରହିବ।

ବର୍ତ୍ତମାନ କଥା ହେଲା ଖେଳ ଆରମ୍ଭ ପାଇଁ କିଛି ପଇସା ଦରକାର। ପଇସା ନ ହେଲେ ଦଳ କେମିତି କାମ କରିବ ?

ହାତୀର ମାହୁନ୍ତ କହିଲା ସେଥିପାଇଁ ଚିନ୍ତା କରନି। ଆମେ ଗୋଟାଏ ନୂଆ ଉପାୟ କରିବା। କିଛି ନୂଆ କଥା ନ କହିଲେ, ନୂଆ କାମ ନ କଲେ, କେହି ଆମକୁ ଅନେଇବେନି, କିଛି ପଚାରିବେନି। ତେଣୁ ଆମେ ସମସ୍ତେ ମିଶି ଯିବା। ଆମ ସାଥିରେ ଥିବା ମଣିଷ, ପଶୁ, ପକ୍ଷୀ ଏବଂ ମାଇଚିଆ ଓ ଆମେ ସମସ୍ତେ ତ ଗୋଟିଏ ପରିବାରର। ଆମ ସମସ୍ତଙ୍କର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ଗୋଟିଏ। ସେଇ ଲକ୍ଷ୍ୟ ଓ ଉଦ୍ଦେଶ୍ୟ ହାସଲ ପାଇଁ ଆମେ ଏକାଠି କାମ କରିବା। ଯଦିଓ ଆମେ ସମସ୍ତେ ଏକ ନୁହେଁ, କିମ୍ବା ଏକ ହେଇ ନ ପାରୁଁ। ତେଣୁ ସମସ୍ତେ ମିଶି ଗୋଟାଏ ଶୋଭାଯାତ୍ରାରେ ଯିବା। ମୁଁ ନିଜେ ପକ୍ଷୀମାନଙ୍କୁ ନେଇ ହାତୀ ପିଠିରେ ବସିବି। ବାକି ସମସ୍ତେ ଗୋଟିଏ ଗୋଟିଏ ପଶୁ ଉପରେ ବସି ଆମେ ସହର ପରିକ୍ରମା କରିବା। ହାତୀର ପେଟ ଉପରେ ଆମର 'ନେସନାଲ୍ ସର୍କସ ଅଫ୍ ଇଣ୍ଡିଆ'ର ବେନରଟା ଭଲଭାବେ ବାନ୍ଧି ଦିଆଯିବ। ତା' ପରେ ଆମେ ବେଣ୍ଡ୍ ବଜେଇ ସହର ଯାକ ବୁଲିବା ଓ ପଇସା ମାଗିବା।

ଏ କଥାରେ ଅନ୍ୟ ସମସ୍ତେ ରାଜି ହେଲେ। ସେମାନେ କହିଲେ, ଏଇଟା ଏକଦମ ଠିକ୍ କଥା। ଆମ ଦଳତ ଅତି ପୁରୁଣା। ଲୋକମାନେ ଆମକୁ ଜାଣିଛନ୍ତି। ସେମାନେ ଆମକୁ ଅତି ଭଲ ପାଆନ୍ତି। ତେଣୁ ଆମେ ସେଇ ସୁଯୋଗ ନ ନେବା କିଆଁ ? ଆମର ମନେ ହୁଏ, ଜାତି ଧର୍ମ ନିର୍ବିଶେଷରେ ଆମକୁ ସମସ୍ତେ ଦୟା ଦେଖେଇବେ।

ଆଉ ଜଣେ କୁତୁ କୁତୁ ଖାଇଲା ପରି ହେଇ କହିଲା, ବୁଝିଲ ନା ଭାଇ, ଆମେ ଯେତେବେଳେ ହାତୀକୁ ଆଗରେ ନେଇ ବାହାରିବା, ଦେଖିବ ଅନ୍ଧଙ୍କ ପରି ଲୋକେ ପ୍ରଥମେ ଆସି ତା ଶୁଣ୍ଢକୁ ଦେଖିବେ। ଆଉ କିଏ ତା କାନକୁ ଧରିବ। କିଏ ତା ଦାନ୍ତକୁ ଆଉଁସିବ। କିଏ ତା ପେଟକୁ ଥାପୁଡ଼େଇବ। ଆଉ କିଏ ତା ମୁଣ୍ଡରେ ସିନ୍ଦୂର ମାରି ତାକୁ ମୁଣ୍ଡିଆ ମାରିବ।

ତାପରେ ମଜା ଦେଖ। ଖାଲି ପଇସା। ଚାଉଳ, ନଡ଼ିଆ, ପରିବା, କଦଳୀ ସବୁ ଆମ ଆଗରେ ଅଜାଡ଼ି ହେଇ ଯିବ।

ସେ ଦିନର ମିଟିଂ ସେଇଠି ଶେଷ ହେଲା।

ତା ପରଦିନ ସକାଳେ ଆରମ୍ଭ ହେଲା ନଗର ପରିକ୍ରମା। ପରିକ୍ରମା ଆରମ୍ଭ ହେଲା ଇଣ୍ଡିଆ ଗେଟ୍ ପାଖରୁ। ଆଗରେ ହାତୀ। ତା ମଥା ଉପରେ ଶାଗୁଣା। ସେ ବେକରେ ଗୋଟିଏ ରୁଦ୍ରାକ୍ଷ ମାଳା ପକେଇ ମୁଣ୍ଡରେ ଚିତା ଚଇତନ ମାରି ବସିଚି ଗୋଟେ ସାଧୁ ସନ୍ନ୍ୟାସି ପରି। ତା ପାଖରେ ଶୁଆ। ହାତୀ ପିଠିରେ ବସିଚି ମାହୁନ୍ତ। ତା କୋଳରେ ମାଙ୍କଡ଼। ସେମାନଙ୍କ ପଛକୁ ପଶୁମାନେ ଏବଂ ତାଙ୍କ ପଛକୁ ଆଉ ମଣିଷ ମାନେ, ଯେ ଯାହାର ପାରମ୍ପରିକ ପୋଷାକରେ।

ଦିଲ୍ଲୀର ଜନପଥ ଲୋକାରଣ୍ୟ ହୋଇଗଲା ମାତ୍ର ଘଣ୍ଟାକ ଭିତରେ। ଗାଡ଼ି, ଘୋଡ଼ା, ବସ, ଟ୍ରକ, କାର ସବୁ ଗୋଟିଏ ଜାଗାରେ ଅଟକି ଗଲା। ସମସ୍ତେ କାବା। କୋଠା ବାଡ଼ି ଛାତ ଉପରେ ମଧ ଲୋକଙ୍କ ଗହଳି କହିଲେ ନ ସରେ। ଆସ୍ତେ ଆସ୍ତେ ଗଛ ଉପରେ ମଧ ଲୋକ ଚଢ଼ିଗଲେ। ଦୀର୍ଘ ପାଞ୍ଚ କିଲୋମିଟର ରାସ୍ତା ଲୋକାରଣ୍ୟ ହେଇଗଲା।

ପୋଲିସ ଆଉ ଟ୍ରାଫିକ୍ ସମ୍ଭାଳି ପାରୁନି। ସେମାନଙ୍କ ଅବସ୍ଥା ବାର ବାଜିଲାଣି। ଏ ଶୋଭାଯାତ୍ରା କିଏ ବାହାର କଲା ? ଏଇଟା କୋଉ ଦଳର ଶୋଭାଯାତ୍ରା ? ଯାର ନେତା କିଏ ? ଶୋଭାଯାତ୍ରା ପାଇଁ ପୋଲିସତ କାହାକୁ ପରିମିଶନ ଦେଇନି। କେହି ପରମିଶନ ମାଗି ନାହିଁ ମଧ। କମିଶନର ସାହେବ କହିଲେ ଏବେତ କୌଣସି ଇଲେକ୍‌ସନ ହେଉ ନାହିଁ କି ହେବାର ନାହିଁ ମଧ। ତେବେ ଏ ଶୋଭାଯାତ୍ରା କାହାର ଓ କାହିଁକି ? କଅଣ ଯାର ଉଦ୍ଦେଶ୍ୟ ?

ଭିଡ଼ ଏପରି ଯେ ଶୋଭାଯାତ୍ରା ମଧ ଆଉ ଆଗକୁ କି ପଛକୁ ଯାଇ ନ ପାରି ଗୋଟିଏ ଛକ ଜାଗାରେ ଅଟକି ଗଲା। ବଡ଼ ବିଚିତ୍ର ଦୃଶ୍ୟ। ସମଗ୍ର ଦିଲ୍ଲୀଟା ଯେମିତି ଗୋଟାଏ ଜାଗାରେ ଅଟକି ଯାଇଚି। ଆକାଶବାଣୀ, ଦୂରଦର୍ଶନ, ଦେଶୀ ଓ ବିଦେଶୀ ସଂବାଦ ପତ୍ରର ପ୍ରତିନିଧି ସମସ୍ତେ ବ୍ୟସ୍ତ କଥାଟା ଜାଣିବା ପାଇଁ। ସରକାରଙ୍କ ତରଫରୁ ହେଲିକପ୍‌ଟରରେ ଘନ ଘନ ଏରିଏଲ ସର୍ଭେ ମଧ ହେଇ ଯାଉଚି। କିନ୍ତୁ ଅବସ୍ଥା ସମ୍ପୂର୍ଣ୍ଣ ଶାନ୍ତିପୂର୍ଣ୍ଣ। ବଡ଼ ବଡ଼ ଲୋକମାନେ ଏବଂ

ପଣ୍ଡିତମାନେ ମତ ଦେଲେ ଯେ ହାତୀର ନେତୃତ୍ୱରେ ଏବଂ ଶୋଭାଯାତ୍ରା ମାଧ୍ୟମରେ ଆମ ଭାରତର ଜନମାନସକୁ ପ୍ରଭାବିତ କରାଯାଇ ପାରେ କି ନା ତାହାର ଏଇଟା ଗୋଟାଏ ପରୀକ୍ଷା। ସେମାନେ ମତ ଦେଲେ ଯେ ଏଇଟା ଗୋଟାଏ ଐତିହାସିକ ଘଟଣା।

ସେ ଦିନ ରାତିରେ ନୂଆ ସର୍କସ ଦଳର ନେତା ଅର୍ଥାତ୍ ମାହୁନ୍ତ ଗୋଟିଏ ମିଟିଂ ଡାକିଲେ। ମିଟିଂ ଆରମ୍ଭ ହେଲା ଡିନର ଟେବୁଲରେ। ସେ କହିଲେ,

"ବଂଧୁଗଣ! ଆମର ଆଜି ଦିନର ଏ ଶୋଭାଯାତ୍ରା ଆମର ଆଖି ଫିଟେଇ ଦେଇଚି। ଆମେ ଆଜି ଗୋଟାଏ ଦିନରେ ଯେତିକି ସଂଗ୍ରହ କରି ପାରିଚେ ତାହା ଆମେ ଜୀବନ ଯାକ ବସି ଉପଭୋଗ କଲେ ମଧ୍ୟ ସରିବ ନାହିଁ। ଯଦି ଗୋଟାଏ ଦିନର ଏ ଶୋଭାଯାତ୍ରାରେ ଆମେ ଏତେ ରୋଜଗାର କରି ପାରୁଚେ, ତେବେ ଆମକୁ ଆଉ ତମ୍ବୁ ଟାଙ୍ଗି ସର୍କସ ଦେଖେଇବାକୁ ପଡ଼ିବନି। କିନ୍ତୁ ଗୋଟାଏ କଥା– ଆମ ପାଖରେ ପ୍ରଚୁର ଅର୍ଥ ଅଛି ବୋଲି ଯେ ଆମେ ଆରାମରେ ଶୋଇ ପଡ଼ିବା ତା ନୁହେଁ। ଆମକୁ ଜାଗ୍ରତ ରହିବାକୁ ପଡ଼ିବ। ଏଣିକି ଏ ଶୋଭାଯାତ୍ରା ଆଉ ପ୍ରତ୍ୟେକ ଦିନ ବାହାର ନକରି ପ୍ରତି ପାଞ୍ଚ ବର୍ଷରେ ଥରେ ବାହାରିବ। ଅବଶ୍ୟ ଲୋକଙ୍କ ମନୋରଞ୍ଜନପାଇଁ ଏଇ ଶୋଭାଯାତ୍ରା ବେଳେ ଆମେ ସର୍କସର ଗୋଟାଏ ଦି'ଟା ଖେଳ କସରତ୍ ଦେଖେଇ ଦେଲେ ଆମ ପାଇଁ ଯଥେଷ୍ଟ।

ଘନ ଘନ କରତାଳି ମଧ୍ୟରେ ସଭା ଶେଷ ହେଲା।



*(ନବପତ୍ର, ୨୦ଶ ବର୍ଷ, ୧୯୯୪)*

# ରାସ୍ତା

ସେଥର ମୋର ନିମନ୍ତ୍ରଣ ଆସିଲା ଚୌଧୁରୀ ଧନପତ୍ ଲାଲ୍ ସେଠଙ୍କ ଠାରୁ। ଚୌଧୁରୀ ଧନପତ୍ ଲାଲଙ୍କ ସହିତ ମୋର ପ୍ରଥମ ପରିଚୟ ହୋଇଥାଏ ସେଥର ପାର୍ଲାମେଣ୍ଟର ମୌସୁମୀ ଅଧିବେଶନ ସମୟରେ। ଚୌଧୁରୀ ଧନପତ୍ ଲାଲ ମୋହନପୁର ଲୋକସଭା ଆସନରୁ ନିର୍ବାଚନ ଲଢ଼ି ହାରି ଯାଇଥାଆନ୍ତି। କିନ୍ତୁ ତାଙ୍କ ପକ୍ଷରେ ଯୋଉ ଲୋକ ସମର୍ଥନ ଥାଏ, ସେଥିରେ ସେ ହାରିଯାଇ ଥାଆନ୍ତି ବୋଲି କେହି ବିଶ୍ୱାସ କରିବେନି। ମୁଁ ନିଜେ ଦେଖିଚି, ଦିଲ୍ଲୀ ଷ୍ଟେସନରେ ତୁଫାନ ମେଲ୍‌ରୁ ଓହ୍ଲେଇଲା ବେଳକୁ ତାଙ୍କୁ ଯେତେ ଲୋକ ରିସିଭ କରିବାକୁ ଆସି ଥାଆନ୍ତି, ସେତେ ଲୋକ ଚୌଧୁରୀ ଚରଣ ସିଂହ ଉପ-ପ୍ରଧାନମନ୍ତ୍ରୀ ଥିଲା ବେଳେ ମଧ୍ୟ ଷ୍ଟେସନକୁ ଆସି ତାଙ୍କୁ ଅଭ୍ୟର୍ଥନା ଜଣାଉ ନଥିଲେ। ମୁଁ ଦେଖି ଆଶ୍ଚର୍ଯ୍ୟ ହେଇ ଗଲି। ଜଣେ ହାରି ଯାଇଥିବା ବ୍ୟକ୍ତିଙ୍କୁ ପୁଣି ଦିଲ୍ଲୀ ଆସିବାବେଳେ ରେଳଷ୍ଟେସନରେ ଏମିତି ଅସ୍ୱାଭାବିକ ସମ୍ବର୍ଦ୍ଧନା ଯେ କୌଣସି ଆଖିକୁ ଆଶ୍ଚର୍ଯ୍ୟ କରିଦେବ। ଖବର ନେଇ ଜାଣିଲି ଯେ ଚୌଧୁରୀ ଧନପତ୍‌ଜୀ କୁଆଡ଼େ ମାତ୍ର ସତେଇଶଟା କମ୍ ଭୋଟରେ ହାରି ଯାଇଛନ୍ତି। ତେବେ, ସେ ଯାହା ହେଉନା କାହିଁକି, ଧନପତ୍‌ଜିଙ୍କ ହାରିବାଟା କୁଆଡ଼େ ଖୋଦ୍ ପ୍ରଧାନମନ୍ତ୍ରୀ ପାଇଁ ଗୋଟାଏ ଶକ୍ତ ଧକ୍କା ଥିଲା।

ଧନ୍‌ପତ୍‌ଜୀ ବିହାରର କୋଇଲା ଖଣି ଅଞ୍ଚଳର ଜଣେ ନାମଜାଦା ନେତା। ସମଗ୍ର କୋଲ୍‌ବେଲ୍ଟ ତାଙ୍କ ହାତ ମୁଠାରେ। ତାଙ୍କ ଇଉନିଅନ୍ ଛଡ଼ା ଅନ୍ୟ କୌଣସି ଶ୍ରମିକ ଇଉନିଅନ୍ ସେ ଅଞ୍ଚଳରେ ମୁଣ୍ଡ ଟେକି ପାରେନା। ମୁଣ୍ଡ ଟେକି ପାରେନା କହିବା ଠିକ୍ ହେବନି, ବରଂ ଜନ୍ମ ହେଇ ପାରେନା କହିବା ଠିକ୍ ହେବ। ପ୍ରବାଦ ଅଛି, ଧନ୍‌ପତ୍‌ଜୀ ଚାହିଁଲେ, ଧାନବାଦ କୋଲବେଲ୍ଟରେ ପ୍ରାତଃ ସୂର୍ଯ୍ୟ ଉଦୟ ହେବ, ନଚେତ୍ ନୁହେଁ। ଗର୍ଭିଣୀ ଗାଈ କଥା ଆଜିକାଲି ପୁରୁଣା ହେଇ ଗଲାଣି। ସରକାରୀ ଅଫିସର ତଥା ଇଲେକସନ୍ କମିଶନଙ୍କ ପାଖ ଅଫିସରମାନେ ମଧ୍ୟ କହନ୍ତି ଯେ ଧନପତ୍‌ଜୀ ଯେଉଁଦିନ ଭୋଟ ପ୍ରଚାରରେ ଯାଆନ୍ତି, ସେଦିନ ସେ ଇଲାକାରେ କାହାରି ଘରେ ଚୁଲି ଜଳେନି କି ତାଟି ଖୋଲେନି।

ହାରିଗଲା ପରେ ପ୍ରଧାନମନ୍ତ୍ରୀ ତାଙ୍କୁ ଡକେଇ ଥିବାରୁ ସେ ଦେଖା କରିବାକୁ ଯାଇଥିଲେ। କିନ୍ତୁ ଧନପତ୍‌ଜୀ ଭଲ ଭାବରେ ଜାଣିଥିଲେ ଯେ ଜିଣିବା ଓ ହାରିବା ଭିତରେ କିଛି ଫରକ ନାହିଁ। ମନ୍ତ୍ରୀମଣ୍ଡଳରେ ସ୍ଥାନଟିଏ ଅଧିକାର କରିବା

ତାଙ୍କ ପାଇଁ ଅତି ସାଧାରଣ କଥା । ତେଣୁ ସେ ଦିନ ଦିଲ୍ଲୀ ରେଳ ଷ୍ଟେସନ୍‌ରେ ଯେତେ ଲୋକ ତାଙ୍କୁ ସମ୍ବର୍ଦ୍ଧନା ଜଣେଇଥିଲେ, ସେମାନେ ସମସ୍ତେ ତାଙ୍କ ଲୋକସଭା ଆସନର ଲୋକ । ସେମାନେ ସମସ୍ତେ ତାଙ୍କ ସହିତ ସେଠୁ ଆସି ଥାଆନ୍ତି । ମୋର ଆଉ ବୁଝିବାରେ କିଛି ବାକି ରହିଲାନି । ପ୍ରଧାନମନ୍ତ୍ରୀ ସେଇଦିନ ହିଁ ତାଙ୍କୁ ସୂଚନା ଦେଲେ ଯେ ଧନପତ୍‌ଜୀ ରାଜ୍ୟସଭା ଦେଇ ମନ୍ତ୍ରୀମଣ୍ଡଳ ଭିତରକୁ ଆସିବାର ସବୁ ବ୍ୟବସ୍ଥା ହେଇସାରିଚି । ବାସ୍, ସେଇଦିନ ସନ୍ଧ୍ୟା ନିଉଜ ବୁଲେଟିନ୍‌ରେ ଆକାଶବାଣୀ ଓ ଦୂରଦର୍ଶନ ପ୍ରଚାର କରିଦେଲେ ଯେ ଧନପତ୍‌ଜୀ ଏଇ ବର୍ଷାକାଳୀନ ଅଧିବେଶନ ଶେଷ ହେବା ପରେ ପରେ ମନ୍ତ୍ରୀମଣ୍ଡଳରେ ଯୋଗଦେବେ । ସେ ନିଶ୍ଚିତ ରୂପେ ଶ୍ରମ ମନ୍ତ୍ରଣାଳୟ ଦଖଲ କରିବେ । ପ୍ରଧାନମନ୍ତ୍ରୀ କୁଆଡ଼େ ତାଙ୍କୁ ଏକଥା ମଧ୍ୟ କହିଥିଲେ ଯେ ସେ ଆଗ ଶପଥ ନେଇ କାମ ଆରମ୍ଭ କରନ୍ତୁ । ପରେ ସେ କୋଉ ରାଜ୍ୟର ବିଧାନସଭା ଭିତର ଦେଇ ରାଜ୍ୟସଭାକୁ ପଶିବେ, ତା'ର ବିଚାର ହେବ ।

ଧନପତ୍‌ଜୀଙ୍କର ଶପଥ ନେବାର ଦିନ ଧାର୍ଯ୍ୟ ହେବା ପୂର୍ବରୁ ଜେନେଭାରେ ହେଉଥିବା ଆନ୍ତର୍ଜାତିକ ଶ୍ରମ ମନ୍ତ୍ରୀ ସମ୍ମିଳନୀରେ ଦେବାକୁ ଥିବା ତାଙ୍କ ଭାଷଣର ଚିଠା ପ୍ରସ୍ତୁତି କମିଟିରେ ସେଦିନ ତାଙ୍କର ଯୋଗ ଦେବାର ଥାଏ ।

ମୋ ସହିତ ତାଙ୍କର ସେଇଠି ପରିଚୟ । ଏମିତି ତ ଧନପତ୍‌ଜୀଙ୍କର ନାଆଁ ମୁଁ ଅନେକ ଆଗରୁ ଶୁଣିଥାଏଁ । ଲେବର ଫିଲ୍‌ଡ଼ରେ ମୁଁ ମଧ୍ୟ ଅନେକ ଦିନ ଧରି ଓଡ଼ିଶାର ଖଣି ଅଞ୍ଚଳରେ କାମ କରି ଆସୁଚି । ମୁଁ ପ୍ରଥମ କରି ସେଥର ଆନ୍ତର୍ଜାତିକ ଶ୍ରମ କମିଶନକୁ ନିର୍ବାଚିତ ହୋଇଥାଏ । ଚିଠା କମିଟି ମିଟିଂରେ ମୋ ଭାଷଣ କୁଆଡ଼େ ତାଙ୍କୁ ଖୁବ୍ ଇମ୍ପ୍ରେସ୍ କଲା । ସେ ମୋତେ କୁଣ୍ଢେଇ ପକେଇଲେ— କହିଲେ, ତୁମେ ଥିଓରୀଗୁଡ଼ାକ ଭଲ ଜାଣିଚ । କିନ୍ତୁ ପ୍ରାକ୍‌ଟିକେଲ୍ ଫିଲ୍‌ଡ଼ରେ ସେ ଗୁଡ଼ା ମୋଟେ କାମ ଦିଏନା । ସେ ହସି ହସି କହିଲେ, ମୁଁ ତୁମର ଥିଓରୀ ଶୁଣିଲି, ତୁମକୁ ମୁଁ ଏଣିକି ପ୍ରାକ୍‌ଟିସ୍ ଶିଖେଇବି । ତମେ ଯଦି କିଛି ନ ଭାବିବ, ଗୋଟାଏ କଥା ମୁଁ କହିବି ।

ମୁଁ କହିଲି, କହନ୍ତୁ । ଆପଣଙ୍କର ସେ ଅଧିକାର ଅଛି ।

ସେ କହିଲେ, ଓଡ଼ିଶାର ଲେବର ଫିଲ୍‌ଡ଼ରେ ପ୍ରାକ୍‌ଟିକାଲ୍ କାମ କିଛି ହେଇନି । ଥିଓରୀରେ କଅଣ ପେଟ ପୂରେ ? ସେ ହୋ ହୋ ହେଇ ହସିଲେ । ମୁଁ ଦେଖିଲି, ତାଙ୍କର ସବୁଗୁଡ଼ିକ ଦାନ୍ତ କୋଇଲା ପରି ମୁଚ୍ ମୁଚ୍ କଳା, କେବଳ ମଝି ଦୁଇଟା ଦାନ୍ତ ସୁନାରେ ତିଆରି ହେଇଥିବାରୁ, ସେ ଦୁଇଟାର ରଙ୍ଗ ଅଲଗା ।

ତାଙ୍କର ହସୁଥିବା ମୁହଁକୁ ଯେ ଦେଖିବ, ଡରିଯିବ । ମୁଁ ବି ପ୍ରଥମେ ଡରି ଯାଇଥିଲି । ପରେ ସେ ମୋର ଅତି ଆପଣାର ବୋଲି ମନେ ପଡ଼ିବାରୁ ଆଉ ଡରିଲିନି ।

ଛଅ ମିଟର କପଡ଼ାର ପଞ୍ଜାବୀ ଓ ଚାରି ମିଟର କପଡ଼ାର ପାଇଜାମା ପିନ୍ଧୁଥିବା ଧନପତ୍‌ଜୀଙ୍କର ନାକଟାର ଲମ୍ବ ଛଅ ଇଞ୍ଚରୁ କମ୍ ହେବନାହିଁ। ଏବଂ ସେଇ ନାକ ଉପରୁ ସିଧା ଉଠି ଯାଇଥାଏ ଅଧଇଞ୍ଚ ବାଇ ଏକ ଇଞ୍ଚ ଲମ୍ବ ଲାଲ ସିନ୍ଦୂରର ଚିତା। ମୋଟାମୋଟି କଥାରେ, ଖଡ୍ଗ ଉତ୍ତୋଳନ କରିଥିବା ଗୋଟେ କାପାଳିକର ଚେହେରା।

ଏପରି ଜଣେ ଅସାଧାରଣ ବ୍ୟକ୍ତିତ୍ୱ ଯେ ମୋତେ କେମିତି ହଠାତ୍ ଭଲପାଇ ବସିଲେ, ମୁଁ ବୁଝିପାରେନା। ତଥାପି ମୁଁ ମନେ ମନେ ତାଙ୍କୁ ଭଲପାଇ ବସିଲି। କାରଣ, ମୋର ତାଙ୍କୁ ଦେଖିଲା ପରଠୁ ଗୋଟାଏ ଧାରଣା ହୋଇ ଯାଇଥିଲା ଯେ ଏବେ ରାଜନୀତିରେ ସେଇ ପ୍ରକାର ବ୍ୟକ୍ତିତ୍ୱର ହିଁ ଆବଶ୍ୟକତା ରହିଚି।

ଏବେ ଗାନ୍ଧୀ ଗୋପବନ୍ଧୁ ଥିଲେ କଅଣ କରି ଥାଆନ୍ତେ ବୋଲି ହଠାତ୍ କୌତୂହଳ ବଶତଃ ମୁଁ ଗୋଟିଏ ସଭାରେ ଉତ୍‌ଶୃଙ୍ଖଳ ଦଳେ ପିଲାଙ୍କୁ ପଚାରି ଦେଇଥିବା କଥା ମୋର ମନେ ପଡୁଚି। ତା' ଭିତରୁ ପ୍ଲସ୍‌ଟୁରେ ପଢୁଥିବା ଗୋଟିଏ ପିଲା ହଠାତ୍ ଉଠି ପଡ଼ି କହିଲା, ବେକରେ ଦଉଡ଼ି ଦେଇ ଆତ୍ମହତ୍ୟା କରି ଥାଆନ୍ତେ। ଆଉ ଜଣେ ଉଠି ପଡ଼ି କହିଲା, ଆଜିକାଲି ଗାଆଁରେ ଆଉ କୂଅ ଦେଖିବାକୁ ମିଳେନି ତ, ସେଇଥିପାଇଁ।

ସମସ୍ତେ ହୋ ହୋ ହେଇ ହସି ଦେଇଥିଲେ ମଧ୍ୟ ମୁଁ ହସଟାକୁ ଚାପି ଦେଇଥିଲି। ପିଲା ଦୁହେଁ ଏମିତି ପଦେ କହି ଦେବେ ବୋଲି ମୋର ଧାରଣା ନଥିଲା।

ଏଇ ସବୁ ଦୃଷ୍ଟିରୁ ଧନପତ୍‌ଜୀଙ୍କ କଥାରେ ଅନେକ ପ୍ରାସଙ୍ଗିକତା ଅଛି ବୋଲି ମୋର ଧାରଣା ହେଲା। କାରଣ, ଆଜିକାଲି ରାଜନୀତିର ରାସ୍ତା ଅନେକ ବଦଳି ଗଲାଣି। ଏମିତି ବଦଳି ଯାଇଥିବା ରାସ୍ତାଟିରେ ଚାଲିବାକୁ ହେଲେ ଆଜିକାଲି ଗାନ୍ଧୀ ମହାତ୍ମାଙ୍କର ପଦଯାତ୍ରାର ଆଉ ଆବଶ୍ୟକତା ନାହିଁ। ସେଥିପାଇଁ ନା ଆବଶ୍ୟକ ଆଣ୍ଠୁ ଉପରକୁ ଛଅ ହାତର ଧୋତି ନା ଫୁଙ୍ଗୁଳା ଦେହରେ ଗଣି ହୋଇଯାଉଥିବା ହାଡ଼। ସେ ବେଶ ଦେଖିଲେ ଆଜିକାଲି ଲୋକେ ଭୋଟ ତ ଦେବେନି, ବରଂ ହାତ ଧରି ରାସ୍ତା ବାହାରକୁ ନେଇଯିବେ।

ତିରିଶ ବର୍ଷ ପୂର୍ବେ ରାଜନୀତି କହିଲେ ଆମେ ଯାହା ବୁଝୁଥିଲୁଁ, ଆଜି ସେ ସବୁ ବୁଝି ଅର୍ଥ ତିଆରି କଲେ ଜଣେ ପ୍ରଚଣ୍ଡ ଭୁଲ କରି ବସିବ। ତା'ର ଅର୍ଥ ସବୁ ବଦଳି ଗଲାଣି। ଅନ୍ତତଃ ଧନପତ୍‌ଜୀଙ୍କ ସହିତ ବ୍ୟକ୍ତିଗତ ଭାବେ ମୋର ପରିଚୟ ହେବା ପରଠୁ ଏମିତି ଗୋଟାଏ ଧାରଣା ମୋ ମନରେ ଦୃଢ଼ୀଭୂତ ହେବାକୁ ଲାଗିଲା ଏବଂ ଏସବୁ ଦୃଷ୍ଟିରୁ ସେ ମୋ ସାମନାରେ ଗୋଟାଏ ବିରାଟ ଆଦର୍ଶ ହେଇ ଛିଡ଼ା ହେଇଗଲେ।

ମୁଁ ତେଣୁ ଧନପତ୍‌ଜୀଙ୍କର ନିମନ୍ତ୍ରଣ ଅତି ଆଗ୍ରହର ସହିତ ଗ୍ରହଣ କରି ନେଲି। ମୋହନପୁର ଯିବାକୁ ମନେ ମନେ ପ୍ରସ୍ତୁତ ହେବାକୁ ଲାଗିଲି।

ମୋତେ ଧନପତ୍‌ଜୀ କହିଥିଲେ, ମୋହନପୁର ଗୋଟାଏ ଅତ୍ୟନ୍ତ ମନୋରମ ସହର। ଚାରି ପାଖରେ ପାହାଡ଼, ପାହାଡ଼ ପାଖେ ପାଖେ ଛୋଟିଆ ନଈ। ନଈ କଢ଼େ କଢ଼େ ଶାଳ ଓ ମହୁଲ ଗଛର ସବୁଜିମାର ପଟୁଆର। ଆଉ ସେ ପଟୁଆରର ମୁଣ୍ଡ ଉପରେ ମେଘର ଲୁଚକାଳି ଖେଳ। ସେ ଲୁଚକାଳି ସାଥିରେ ଥାଏ ମହୁଆ ପବନ। ଜଣେ ନ ଦେଖିଲେ ବୁଝି ପାରିବନି। ସେଇଠି ସେଇ ନଈ କୂଳରେ ସୁନ୍ଦର ମୁଗୁନି ପଥରର ଦୋମହଲା ଅତିଥିଶାଳାଟିଏ ଧନପତ୍‌ଜୀ ତିଆରି କରେଇଛନ୍ତି। କୋଡ଼ିଏ କୋଠରୀ ବିଶିଷ୍ଟ ଏ ଅତିଥି ଶାଳାକୁ ଭାରତର ବିଶିଷ୍ଟ ହୋଟେଲ ବ୍ୟବସାୟୀମାନେ କେତେ ଥର କିଣି ନେବେ ବୋଲି କହିଲେଣି। କିନ୍ତୁ ଧନପତ୍‌ଜୀ ସେଥିରେ ରାଜି ହେଇ ନାହାନ୍ତି। ସେ କହନ୍ତି, ଅତିଥିଶାଳାଟି ମୋ ନାଆଁରେ ଅଛି ସତ, କିନ୍ତୁ ତା'ର ମାଲିକ ସେଠାକାର ଖଣି ଶ୍ରମିକମାନେ। ତାଙ୍କରି ପଇସାରେ ହିଁ ସେଇଟା ତିଆରି ହେଇଚି, ସେଥିରେ ଧନପତ୍‌ଜୀ ଗୋଟିଏ ପଇସା ମଧ୍ୟ ଖର୍ଚ୍ଚ କରି ନାହାନ୍ତି। ତେଣୁ ସେ ଅତିଥି ଭବନର ନାଆଁ ଦେଇଚନ୍ତି 'ଶ୍ରମ ଭବନ'। ଧନପତ୍‌ଜୀ ଗୋଟାଏ ନିୟମ କରି ଦେଇଛନ୍ତି ଯେ ଶ୍ରମିକମାନେ ଯଦି ବାହାରୁ ଆସନ୍ତି, ସେମାନେ ଅନ୍ତତଃ ଗୋଟାଏ ଦିନ ସେଠି ମାଗଣାରେ ରହି ପାରିବେ। ତାଙ୍କର ସମସ୍ତ ଖର୍ଚ୍ଚ 'ଭବନ' ବହନ କରିବ। ତେବେ କୋଉ ଶ୍ରମିକଟାଏ ଯାଇ ସେଠି ଶୀତତାପ ନିୟନ୍ତ୍ରିତ କୋଠରୀରେ ରାତ୍ରୀଯାପନ କରି ତା ପରଦିନ ସେଠୁ ଥଣ୍ଡା ଓ ସର୍ଦ୍ଦିଜ୍ୱର ନେଇ ବାହାରକୁ ଆସିବ ?

ସେଇ ମହାର୍ଘ୍ୟ ଅତିଥିଶାଳାରେ ଆମର ରହିବାର ବ୍ୟବସ୍ଥା ହେଇଚି। ମୁଖ୍ୟତଃ ସେ ଅତିଥିଶାଳାଟି କେବଳ ମନ୍ତ୍ରୀ ଓ ସେଇ ଶ୍ରେଣୀର ଅଫିସରମାନଙ୍କ ପାଇଁ ରଖାଯାଇଥାଏ। ମୋର ସେଠି ଗୋଟାଏ ସେମିନାରରେ ଭାଷଣ ଦେବାର ଥାଏ। ସେମିନାରଟି ପୂର୍ବ ଏସିଆର ବନ୍ଧୁ ରାଷ୍ଟ୍ରମାନଙ୍କ ଗୋଷ୍ଠୀ ତରଫରୁ ଆୟୋଜିତ ହେଇଥାଏ ଏବଂ ସେଠି ଯୋଉ ବିଷୟ ଉପରେ ମୋର ଭାଷଣ ଦେବାର ଥାଏ, ତା'ର ଶିରୋନାମା ଥିଲା 'ଏକବିଂଶ ଶତାବ୍ଦୀରେ ରାଷ୍ଟ୍ର ନିର୍ମାଣରେ ଶ୍ରମିକର ଭୂମିକା'। ଏମିତିକା ଗୋଟିଏ ବିଷୟବସ୍ତୁ ପୂର୍ବ ଏସିଆର ରାଷ୍ଟ୍ରମାନେ କାହିଁକି ବାଛିଲେ ଏବଂ ମୋହନପୁର ଭଳି ଗୋଟିଏ ପାର୍ବତ୍ୟ ଅଞ୍ଚଳରେ ଏ ବିଷୟ ଉପରେ ଭାଷଣ ଦେଲେ କି ପ୍ରଭାବ ପଡ଼ିବ, ମୁଁ ବୁଝିପାରୁ ନଥିଲି। କିନ୍ତୁ ଧନପତ୍‌ଜୀ ମୋତେ କହିଲେ, ଆପଣ ସେଥିରେ ବ୍ୟସ୍ତ ହୁଅନ୍ତୁନି। ସେ ସବୁ କିଛି ନୁହେଁ। ଅସଲ କଥା ହେଉଚି ଏଇ ସବୁ ସଂସ୍ଥା, ଶ୍ରମିକମାନଙ୍କର ଶିକ୍ଷା ନାଆଁରେ ପ୍ରଚୁର ଅର୍ଥ ଖର୍ଚ୍ଚ କରନ୍ତି। ପ୍ରଥମ କଥା, ଆମେ କିଛି, ସେ ଅର୍ଥରୁ ପାଇ ପାରିବା ଏବଂ ଦୁଇରେ,

ବିଭିନ୍ନ ଦେଶକୁ ଯିବା ପାଇଁ ଆମ ପାଇଁ ଏ ଗୋଟାଏ ମଉକା। ସେ ମୋତେ କହିଲେ, ଆପଣଙ୍କର ଏ ଭାଷଣ ପାଇଁ ଆପଣ ହଜାରେ ଡଲାର ପାରିଶ୍ରମିକ ପାଇବେ।

ମୁଁ ଯେ କେବଳ ଏଇ ହଜାରେ ଡଲାର ଲୋଭରେ ଭାଷଣ ଦେବାକୁ ରାଜି ହେଇଗଲି, ତା ନୁହେଁ। ମୁଁ ଚାହୁଁଥିଲି ଧନପତ୍‌ଜୀଙ୍କ ଭଳି ଜଣେ ଲୋକର ଆଶୀର୍ବାଦ ଯଦି ମୋ ଉପରେ ସବୁବେଳେ ଥାଏ ଏବଂ ତାଙ୍କ ଆଦର୍ଶରେ ଯଦି ଆମ ଓଡ଼ିଶାର ଶ୍ରମିକ ସଂଗଠନଗୁଡ଼ିକୁ ଅନୁପ୍ରାଣିତ କରିହୁଏ, ତେବେ ନିର୍ଜୀବ ଶ୍ରମ ଆନ୍ଦୋଳନକୁ ନୂଆକରି ଜୀବନ ଦେଇ ହେବ ଏବଂ ସେ ସବୁର ଗୋଟାଏ ନୂଆକରି ମୂଲ୍ୟବୁଝା ଦେଇ ହେବ।

ମୁଁ, ମୋ ସ୍ତ୍ରୀ ଓ ପିଲାମାନଙ୍କୁ ଡାକି କହିଲି ପ୍ରସ୍ତୁତ ହେବାକୁ। ଆମେ ସମସ୍ତେ ଯିବା। ଏତେ ବଡ଼ ସୁଯୋଗଟା ଯେତେବେଳେ ହାତକୁ ଆସିଚି, ତାକୁ ଛାଡ଼ିଦେବା ଠିକ୍ ହେବନାହିଁ। ମୁଁ ଏ କଥା ମଧ୍ୟ କହି ଦେଲି ଯେ ଆମେ ଆମ କାର୍‌ରେ ଯିବା।

ମୋ ସ୍ତ୍ରୀ କହିଲେ, ଯଦି ଯାଉଚେ, ତେବେ ଆସିଲା ବେଳେ ଟାଟା ବାଟେ ଆସିବା। ସେଠି ତାଙ୍କ ଭଉଣୀ ଅଛନ୍ତି, ଅନେକ ଦିନ ପରେ ତାଙ୍କୁ ଟିକେ ମଧ୍ୟ ଦେଖି ଆସିବା। ମୁଁ ସେଥିରେ ରାଜିହେଲି। ପ୍ରସ୍ତାବଟା ମନ୍ଦ ନୁହେଁ।

ମୋ ଡ୍ରାଇଭର ସେତିକିବେଳେ ଆସି ପଚାରିଲା, ସାର୍ ମୋହନପୁରକୁ ରାସ୍ତା ତ ମୁଁ ଦେଖିନି। କୋଉବାଟେ ଯିବାକୁ ହେବ? ସେ ରାସ୍ତା କେମିତିକା, ବାଟରେ ଗାଡ଼ି ଖରାପ ହେଲେ କେମିତି କଅଣ କରାଯିବ, ଏମିତି କେତେଗୁଡ଼ାଏ କଥା ଟିକିଏ ଜାଣିବା ଦରକାର।

ମୁଁ କହିଲି, ଆରେ ତୁ ସେ ସବୁ କଥାକୁ ମୋଟେ ଚିନ୍ତା କରନା। ମୋହନପୁର ଏବେ ନୂଆ ସହରଟିଏ ବୋଲି ଭୂଗୋଳ ମାନଚିତ୍ରରେ ଲେଖା ହେଇନି ସିନା, କିନ୍ତୁ ତୁ ଚାଇ ଦେଖିବୁ, ସାରା ଭାରତର ସବୁ ରାସ୍ତା ଏବେ ସେଇ ମୋହନପୁର ଆଡ଼କୁ ମୁହେଁଇଚି। ଆଉ ସେ ରାସ୍ତା କଅଣ ଇମିତି ସିମିତି ରାସ୍ତା କି? ଧନପତ୍‌ଜୀ କହୁଥିଲେ, ମୋହନପୁରର ଯୋଉ ରାସ୍ତାକୁ ଏବେ ଜାତୀୟ ରାଜପଥ ବୋଲି କୁହାଯାଉଛି, ତା'ର ଚେହେରା ଏବେ ବଦଳି ଯାଇ ଆନ୍ତର୍ଜାତୀୟ ରାଜପଥରେ ପରିଣତ ହେବ। ଆଉ ଧନପତ୍‌ଜୀ ଯାହା ଥରେ କହନ୍ତି, ତାକୁ ସେ ନିଶ୍ଚୟ କାମରେ ପରିଣତ କରନ୍ତି। ମୋ ଝିଅ, ଯେ କି ଏ ବର୍ଷ ଗୋଟିଏ ଅଣସ୍ୱୀକୃତିପ୍ରାପ୍ତ ବିଶ୍ୱବିଦ୍ୟାଳୟରୁ ଅର୍ଥନୀତିରେ ଏମ.ଏ.ପାଶ୍ କରି ଗୋଲ୍‌ଡ଼ ମେଡ଼ାଲ ପାଇଚି, ସେ କୋଉଠି ଥିଲା, ବାହାରି ଆସି କହିଲା, ବାପା ତୁମେ ଗଲା କେତେଦିନ ହେଲା ଯେମିତି ଭାବରେ ଧନପତ୍‌ଜୀ ଓ ତାଙ୍କ ରାଜନୀତି ବିଷୟରେ କହୁଚ, ମୋର ମନେ ହେଉଚି ସେ ହିଁ ଡମର ଗାନ୍ଧୀ।

ମୁଁ କହିଲି, ମା, ତୁ ଧନପତ୍‌ଜୀଙ୍କୁ ତ ମୋଟେ ଜାଣିନୁ, ସେଇଥିପାଇଁ ଏମିତି କହୁଚୁ। ତୁ ଚାଇଁ, ଦେଖିବୁ, ସେଠି ଲୋକେ ତାଙ୍କୁ ଖାଲି ଗାନ୍ଧୀ ନୁହେଁ, ଲେଲିନ୍, ମାର୍କ୍ସ, ମାଓ କିମ୍ବା ନେପୋଲିଅନ୍, ହିଟଲର୍ ଠିକ୍ ସେଇମାନଙ୍କ ପରି କିମ୍ବା ସେମାନଙ୍କଠୁ ଆହୁରି ଉର୍ଦ୍ଧ୍ୱରେ ଟେକି ଧରିଛନ୍ତି। ଏସବୁ ତାଙ୍କୁ ନ ଦେଖିଲେ କିମ୍ବା ତାଙ୍କୁ ଠିକ୍ ଭାବେ ନ ଜାଣିଲେ ବୁଝିବା ସମ୍ଭବ ନୁହେଁ। ତା'ର କାରଣ, ଧନପତ୍‌ଜୀ ମୋଟେ ପ୍ରଚାର ପ୍ରିୟ ନୁହଁନ୍ତି। ତେବେ ମୁଁ ଶୁଣିଚି, ତାଙ୍କ ଉପରେ....ମାନେ ତାଙ୍କର ବିଭିନ୍ନ କାର୍ଯ୍ୟକଳାପ ଉପରେ 'ଜୀ' ଓ 'ଷ୍ଟାର' ଏପରିକି ବି.ବି.ସି ମଧ୍ୟ ଅନେକ ଥର ପ୍ରଚାର କରି ସାରିଲେଣି। ଏସବୁ କମ୍ କଥା ନୁହେଁ।

ଡ୍ରାଇଭର ପୁଣି ମୁହଁ ତଳକୁ କରି କହିଲା, ଆମର ଏ ଅଣୀ ମଡ଼େଲର ପୁରୁଣା ଆମ୍ବାସାଡ଼ର ଗାଡ଼ିଟା ଉପରେ ଆଉ ବେଶି ଭରସା ରଖି ହେଉନି କି ନା, ଆପଣ ତ ପୁଣି ଫେମିଲି ନେଇ ଯିବେ କହୁଚନ୍ତି।

ମୋ ସ୍ତ୍ରୀ ଆଲୋଚନାରେ ଯୋଗଦେଇ କହିଲେ, ମୁଁ ମୋଟେ ସେ ଧଡ଼ଡ଼ା କାର୍‌ରେ ଯିବିନି। କେତେବେଳେ କୋଉ କଥା। ଜଙ୍ଗଲ ଭିତର ଦେଇ ତ ଯିବାକୁ ହେବ। ମୋତେ ସେ ନାକ ଛିଞ୍ଚାଡ଼ି କହିଲେ, ଏତେ ଦିନ ଯାଏ ତ ଖାଲି ଶ୍ରମିକ ଶ୍ରମିକ କହି ଜୀବନର ଅଧାରୁ ବେଶି କଟେଇ ଦେଲଣି। ତମ ଧନପତ୍‌ଜୀଙ୍କୁ ଯଦି ତାଙ୍କ ଶ୍ରମିକମାନେ ଗୋଟାଏ ବିରାଟ କୋଠା ଦେଇ ପାରିଛନ୍ତି, ତେବେ ତମ ଶ୍ରମିକମାନେ ତମକୁ ସାମାନ୍ୟ ଗାଡ଼ି ଖଣ୍ଡେ ଦେଇ ପାରନ୍ତେନି ?

ଡ୍ରାଇଭର ସାମ୍‌ନାରେ ମୋ ସ୍ତ୍ରୀଙ୍କର ଏ ପ୍ରକାର ମନ୍ତବ୍ୟକୁ ମୁଁ ପସନ୍ଦ କରି ପାରୁ ନଥିଲି। ପୁଣି କହିଲି, ଆଃ, ସେ ସବୁ କଥା କିଛି ନୂଆ ନୁହେଁ ଆଜିକାଲି। ଆମ ଓଡ଼ିଶାରେ ମଧ୍ୟ ଏ କଥା ହେଲାଣି। କାର୍ କାହିଁକି, ଘର ମଧ୍ୟ ଟେକି ଦେଲେଣି ଲୋକମାନେ। ଆମେ ସେତେବେଳେ ତାକୁ ଅନୈତିକ ବୋଲି କହୁଥିଲୁଁ, କିନ୍ତୁ ଏବେ ଦେଖୁଚି, ଆମର ଚିନ୍ତାଧାରାଟା ଥିଲା ଭୁଲ। ଯୋଉ ଜନତା, ଜଣକୁ ତା'ର ପ୍ରିୟଜନ ମନେକରି, ଭୋଟ ପରି ତା'ର ସର୍ବସ୍ୱ ଟିକକ ନିଗାଡ଼ି ଦେଇ ରତ୍ନ ସିଂହାସନରେ ବସେଇ ଦେଇପାରୁଚି, ସେଠି ସେଇ ଭୋଟରେ ତା'ର ନେତାକୁ ପାଞ୍ଚ ସାତ ଲକ୍ଷ ଖର୍ଚ୍ଚ କରି ଯଦି ସାଧାରଣ ଘରଟିଏ ଟେକି ଦେଲା, ତାକୁ ଅନୈତିକ ବୋଲି ଆମେ କାହିଁକି କହିବା ? ଆଉ ଗାଡ଼ି ? ଏଇନେ କହିଲେ, ମାରୁତି କଅଣ ଇମ୍ପାଲ ଟିଏ ମଧ୍ୟ ଠିଆ ହେଇଯିବ।

ମୋ ସ୍ତ୍ରୀଙ୍କ ମୁହଁରୁ କୃତାର୍ଥ ହସଟିଏ ପାଖୁଡ଼ା ମେଲେଇ ଖସି ପଡ଼ିଲା। ଏମିତି ଆତ୍ମସନ୍ତୋଷର ହସ ମୁଁ ତାଙ୍କ ମୁହଁରେ ଆଗରୁ କେବେ ଦେଖି ନଥିଲି।

ଆମେ ସେଦିନ ମୋହନପୁରରେ ପହଞ୍ଚିଲା ବେଳକୁ ସନ୍ଧ୍ୟା ହେଇ ଯାଇଥିଲା। 'ଶ୍ରମ ଭବନରେ' ପହଞ୍ଚିଲୁଁ ଠିକ୍ ସନ୍ଧ୍ୟା ସାତଟାରେ। ଈଶ୍ୱରଙ୍କ କୃପାରୁ ଆମର

ରାସ୍ତାରେ କୌଣସି ଅସୁବିଧା ହୋଇନି। ଅବଶ୍ୟ ମୋ ଗାଡ଼ିଟା ପୁରୁଣା ହେଲେ ମଧ୍ୟ ତା ଉପରେ ମୋର ଭରସା ଥିଲା। ଯେମିତି ଆମର ସାଂସ୍କୃତିକ ମୂଲ୍ୟବୋଧ ଯେତେ ପୁରୁଣା ହେଲେ ମଧ୍ୟ ଆମେ ବିଶେଷ କରି ଓଡ଼ିଆମାନେ ତା ଉପରେ ଏବେବି ଭରସା ରଖିଆସିଚୁଁ। ଅବଶ୍ୟ ଆଜିକାଲି ତାକୁ ବଦଳେଇବା ପାଇଁ ଦାବୀ ହେଲାଣି ଓ ପରିସ୍ଥିତି ଦୃଷ୍ଟିରୁ ଏ ଗୁଡ଼ିକ ବଦଳିବା ଉଚିତ୍ ବୋଲି ମଧ୍ୟ ମୁଁ ମତ ପୋଷଣ କରେ। ସବୁଠି ଗୋଟାଏ ଲିବରଲାଇଜେସନ୍‌ର ପଦଧ୍ୱନି ଶୁଣାଗଲାଣି। ତାକୁ ଆମେ କେତେଜଣ ଗ୍ରହଣ କରିବାକୁ ଟିକିଏ କୁଣ୍ଠାବୋଧ କରୁଥିଲେ ମଧ୍ୟ ପରବର୍ତ୍ତୀ ଜେନେରେସନ ଆମକୁ ବାଧ୍ୟ କରୁଚି। ସେଇଥିପାଇଁ ଧନପତ୍‌ଜୀ କହୁଚନ୍ତି, ଥିଓରୀ ଓ ପ୍ରାକ୍‌ଟିସ୍ ଭିତରେ ଫରକ ରହି ଯାଉଚି। ସେ କହନ୍ତି, ଅଭିଧାନରେ 'ସତ'ର ଅର୍ଥ ଯାହା, ପ୍ରାକଟିସ୍‌ରେ 'ସତ'ର ଅର୍ଥ ତା ନୁହେଁ। ଏବର ରାଜନୀତିରେ ଏଇ ଫରକଟାକୁ ଯଦି ସତ୍ୟ ବୋଲି ଗ୍ରହଣ କରା ନ ଯାଏ, ତେବେ ଦେଶ ପଛରେ ପଡ଼ିଯିବ। ଆମେ ସବୁ ବି ଅଚଳ ଟଙ୍କା ହେଇ ରାସ୍ତାରେ ଫୋପାଡ଼ି ହେଇଯିବା।

ଶ୍ରମ ଭବନରେ ଆମ ପାଇଁ ତିନୋଟି କୋଠରୀ ସଂରକ୍ଷିତ ଥିଲା। ଗୋଟିଏ ଆମ ଦୁଇଜଣଙ୍କ ପାଇଁ, ଗୋଟିଏ ପୁଅ ପାଇଁ ଓ ଆଉ ଗୋଟିଏ ଝିଅ ପାଇଁ। କୋଠରୀଗୁଡ଼ିକ ଶୀତତାପ ନିୟନ୍ତ୍ରିତ ଏବଂ କେବୁଲ ଟିଭି ଠାରୁ ଆରମ୍ଭ କରି ଫୋନ୍ ସମେତ ଅନ୍ୟ ସମସ୍ତ ପ୍ରକାର ବିଳାସ ବ୍ୟସନର ବ୍ୟବସ୍ଥା ଥିଲା। ଆମେ ଦେଖି କାବା ହେଇଗଲୁଁ। ସାମ୍ନା ବାଲକନୀରେ ଠିଆ ହେଲେ ଆଗରେ ଛୋଟ ନଈ। ନଈ ସେ ପାଖରେ ଘଞ୍ଚ ଅରଣ୍ୟ ଆଉ ପାହାଡ଼। ମୋତେ ଇନ୍ଦ୍ର ଭବନ ପରି ଲାଗିଲା।

ମୋତେ ଲାଗିଲା, ଓଡ଼ିଶାରେ ଏମିତିକା ସୁନ୍ଦରୀ ନଈଟିଏ ତ ମିଳିବନି ଅଧିକନ୍ତୁ ସେ ଶାଳ ମହୁଲର ବଣ ତୁଳନାରେ ଓଡ଼ିଶାର ଶାଳ ମହୁଲ ଗଛଗୁଡ଼ାକ କେମିତି ରୋଗା ଓ ଶୁଖିଲା। ପ୍ରେମର ମାତ୍ରାଟା ଯେତେବେଳେ ବଢ଼ିଯାଏ, ସୀମା ଟପିଯାଏ—ସେତେବେଳେ ସବୁଠାରୁ ଅସୁନ୍ଦରୀ ନାରୀଟିଏ ମଧ୍ୟ ସବୁଠୁଁ ସୁନ୍ଦର ହେଇ ଆଖି ଆଗରେ ଠିଆହୁଏ। କିମ୍ବା କୁତ୍ସିତତମ ପୁରୁଷଟିଏ ଭିତରେ ମଧ୍ୟ ଅପରୂପା ନାରୀଟି ପ୍ରେମର ଫୁଲଗୁ ଦେଖେ। ତେଣୁ କବିମାନେ କହନ୍ତି, 'ଯାହାକୁ ଯିଏ ସୁନ୍ଦର'।

ମୋହନପୁରକୁ ମୁଁ ଯେମିତି ଜୀବନରେ ଭଲ ପାଇ ବସିଲି କି ନା ଜାଣେନା। ତେବେ ମୋହନପୁର ସାଥିରେ ଆଉ କୌଣସି ଗାଆଁ କି ସହରକୁ ମୁଁ ତୁଳନା କରିପାରୁ ନାହିଁ।

ଗେଷ୍ଟ୍ ହାଉସର ମେନେଜର ମୋତେ ଆସି ଖବର ଦେଇଗଲେ ଯେ ଧନପତ୍‌ଜୀ ଆଜି ରାତିରେ ଶପଥ ନେଇ ସାରିଲା ପରେ ରାଷ୍ଟ୍ରପତି ଭବନରେ ଗୋଟିଏ ନୈଶ୍ୟଭୋଜିରେ ଯୋଗଦେବେ ଏବଂ କାଲି ସକାଳ ନଅଟା ସୁଦ୍ଧା ଗୋଟିଏ ସ୍ପେଶାଲ ପ୍ଲେନ୍‌ରେ ଏଠାକୁ ଆସିବେ।

ସ୍ପେଶାଲ ପ୍ଲେନ୍ ? ମୁଁ ପଚାରିଲି।

ସେ କହିଲେ, ଆମେରିକାର ଯୋଉ କମ୍ପାନୀକୁ ଏବେ ବିହାରର କେତେଗୁଡ଼ିଏ ସରକାରୀ ଖଣିକୁ ହସ୍ତାନ୍ତର କରାଯାଉଛି, ସେଇ କମ୍ପାନୀର କେତେଜଣ ଅଫିସର ତାଙ୍କ ଡାକୋଟାରେ ଧାନବାଦ ଆସୁଛନ୍ତି– ସେ ସେଇଥିରେ ଆସିବେ।

ମୁଁ ମନେ ମନେ ଆମର ପ୍ରୋଗ୍ରାମଟିକୁ ଦେଖିନେଲି। ସେମିନାର ଉଦ୍‌ଘାଟନ ହେବ ଦିନ ତିନିଟାରେ। ଉଦ୍‌ଘାଟନ କରିବେ କାନାଡ଼ାସ୍ଥିତ 'ୱାର୍ଲ୍ଡ ଅରଗାନାଇଜେସନ୍ ଅଫ୍ ଟ୍ରେଡ୍ ଆଣ୍ଡ କମର୍ସର' ଚେଆରମେନ୍। ସେ ଆସନ୍ତାକାଲି ଟୋକିଓରୁ ଆସି ଏଠି ପହଞ୍ଚିବେ, ତାଙ୍କ ନିଜ ବିମାନରେ। ତାଙ୍କ ସହିତ ଆହୁରି ଅନେକ ଅଫିସର ମଧ୍ୟ ଆସିବେ। ତେବେ, ସାନ୍ଧ୍ୟ ଅଧିବେଶନରେ ଉଦ୍‌ଘାଟନୀ ଭାଷଣଟା ମୋର ଦେବାର ଥାଏ। ମୁଁ ସେଥିପାଇଁ ମେନେଜରଙ୍କୁ ମୋର ଆସନ୍ତାକାଲି ପୂର୍ବାହ୍ନରୁ କାର୍ଯ୍ୟକ୍ରମ ବିଷୟରେ ପଚାରିଲି। ସେ କହିଲେ, ଆପଣଙ୍କ ପାଇଁ କାଲି ଦୁଇଟି ଗାଡ଼ି ଏଠିକୁ ସକାଳ ଆଠଟା ବେଳକୁ ଆସିବ। ଆପଣ ତାକୁ ନେଇ 'ସାଇଟ୍ ସିଇଙ୍ଗ୍' ରେ ଯାଇ ପାରନ୍ତି କିମ୍ବା ବିଭିନ୍ନ କୋଇଲା ଖଣି ଇତ୍ୟାଦି ମଧ୍ୟ ଦେଖିବାକୁ ଯାଇ ପାରନ୍ତି। ଗୋଟିଏ ଗାଡ଼ିରେ ଆମର ଜଣେ ଗାଇଡ୍ ଥିବ। ମୋଟ କଥା, ଲଞ୍ଚ ପୂର୍ବ ସମୟଟା ଆପଣଙ୍କୁ ଫ୍ରି ରଖାଯାଇଛି। ଟିକିଏ ରହି ସେ ପୁଣି କହିଲେ, ତେବେ ଧନପତ୍‌ଜୀଙ୍କ ପ୍ରୋଗ୍ରାମ ଅନୁସାରେ, ସେ ଆପଣଙ୍କ ସହିତ ପଅର ଦିନ ସକାଳେ ଏକ ସ୍ୱତନ୍ତ୍ର ବ୍ରେକ୍‌ଫାଷ୍ଟ ଟେବୁଲରେ ଦେଖା କରିବେ ଏବଂ ଆପଣଙ୍କ ସହିତ ଏକାନ୍ତରେ ବସି ବିଭିନ୍ନ ବିଷୟରେ ଆଲୋଚନା କରିବେ।

ଏକାନ୍ତରେ ? ମୁଁ ପଚାରିଲି।

ସେ କହିଲେ, ଆପଣଙ୍କ ସହିତ ଆଲୋଚନା ହେବ ଏକାନ୍ତରେ। କାରଣ, ତାହା ରାଜନୀତି ବିଷୟରେ। କିନ୍ତୁ ବ୍ରେକ୍‌ଫାଷ୍ଟରେ ସମସ୍ତେ ରହିବେ। ଅର୍ଥାତ୍ ସେ ମଧ୍ୟ ସସ୍ତ୍ରୀକ ଆସିବେ।

ସେ ଚାଲିଗଲେ। ମୁଁ ତା ପରେ ମୋ ସ୍ତ୍ରୀଙ୍କୁ ଡାକି ସେଇ ଅନୁସାରେ ପ୍ରୋଗ୍ରାମଟା ଜଣେଇ ଦେଲି। ପରଦିନ ସକାଳେ ଆମେ ଗଲୁଁ ବୁଲାବୁଲି କରିବାକୁ ଓ କେତେକ ପରିମାଣରେ ସପିଙ୍ଗ ମଧ୍ୟ କଲୁଁ। କିନ୍ତୁ ସେଇଟା ସେମିତି କିଛି ନୁହେଁ। ସବୁ କାମ ମାତ୍ର ଦୁଇ ଘଣ୍ଟା ଭିତରେ ସାରି ଆମେ ଫେରି ଆସିଲୁଁ। କାରଣ, ସାନ୍ଧ୍ୟ ଅଧିବେଶନ ପାଇଁ ମୋତେ ମୋର ସ୍ପିଚ୍ ଉପରେ ଟିକିଏ ଫାଇନାଲ ଟଚ୍ ଦେବାର ଥାଏ।

ଅପରାହ୍ନ ତଥା ସାନ୍ଧ୍ୟ ଅଧିବେଶନ ଆମର ଶେଷ ହେଲା ବେଶ୍ ବର୍ଣ୍ଣାଢ୍ୟ ପରିବେଶ ଭିତରେ। ପ୍ରାୟ ଏକହଜାର ଡେଲିଗେଟ୍‌ରେ ଭର୍ତ୍ତି ଥିବା ହଲ୍‌ଟି ଏମିତି ସଜା ହୋଇଥାଏ ଯେ ଗୋଟାଏ ଆନ୍ତର୍ଜାତିକ ମାନର କନଫରେନ୍ସ ସେଥିରେ

ହେଉଚି ବୋଲି ଅନୁମାନ କରା ଯାଇପାରେ। ଟିଭି, ଆକାଶବାଣୀ, ଫରେନ୍ ସମ୍ବାଦପତ୍ରର ସାମ୍ବାଦିକମାନେ ସବୁ ଯଥେଷ୍ଟ ପୂର୍ବରୁ ଆସି ସ୍ଥାନ ଦଖଲ କରି ସାରି ଥାଆନ୍ତି।

ରାତିରେ ଆମେ ଶୋଇବା ପୂର୍ବରୁ ମୁଁ, ମୋର ସ୍ତ୍ରୀ ଓ ପିଲାମାନଙ୍କୁ ଡାକି ଆସନ୍ତାକାଲି ସକାଳେ, ବ୍ରେକ୍‌ଫାଷ୍ଟ ବେଳେ କିପରି 'ଟେବୁଲ ମେନର' ରକ୍ଷା କରିବାକୁ ହେବ, ସେ ବିଷୟରେ ଏକ ସଂକ୍ଷିପ୍ତ ସୂଚନା ଦେଇ ଦେଲି।

ପର ଦିନ ଆମେ ବ୍ରେକ୍‌ଫାଷ୍ଟ ପାଇଁ ରେଡ଼ି ହେଇଗଲୁଁ ଠିକ୍ ଆଠଟାରେ। ଧନପତ୍‌ଜୀ ତାଙ୍କ ପିଲାମାନଙ୍କୁ ସାଥିରେ ନେଇ ଆସି ପହଞ୍ଚିଲେ ଠିକ୍ ଆଠଟା ପନ୍ଦରରେ। ପ୍ରଥମ ପରିଚୟ ଆଦାନ ପ୍ରଦାନ ପରେ ଆମେ ନିଜ ଭିତରେ ବସି ଖୁସି ଗପ ହେଲୁଁ। ଧନପତ୍‌ଜୀ ମୋତେ ମୋ ଝିଅ କଥା ପଚାରିଲେ। ସେ ଏମ୍.ଫିଲ ଓ ପି.ଏଚ.ଡ଼ି କରି ଚାକିରି କରିବ ବୋଲି କହିବାରୁ, ସେ ହସିଲେ। କହିଲେ, ଯେଉଁ ଲୋକ ତା' ନିଜ ପିଲା ପିଲିଙ୍କ ଭବିଷ୍ୟତ କଥା ଠିକ୍ ଭାବେ ପ୍ଲାନ୍ କରି ପାରୁନି, ସେ ଦେଶର ଭବିଷ୍ୟତ କଥା କଅଣ ଚିନ୍ତା କରିବ?

ଆମେ ସବୁ ତଳକୁ ମୁଣ୍ଡ ନୋଇଲୁଁ। ସେ ପୁଣି କହିଲେ, ଏମ୍. ଫିଲ୍ ବା ପି.ଏଚ୍.ଡ଼ି. ଏସବୁ ତ ପାଞ୍ଚ ମିନିଟର କଥା। ଏଡ଼ମିଶନ କୋଉଠି ଆପଣ ଚାହାନ୍ତି? ଦେଶ ଭିତରେ ନା ବାହାରେ? ଏବେ କହିଲେ ଏବେ ସିଟ୍ ମିଳିଯିବ, ସ୍କଲାରସିପ୍ ସହ। ଏ ସବୁ କୋଉ କଥା? କିନ୍ତୁ ଆପଣଙ୍କ ଦୃଷ୍ଟି ତ ସେତିକିରେ ସୀମାବଦ୍ଧ ରହିବା ଉଚିତ୍ ନୁହେଁ। ଟିଚରଟିଏ ହେଇ ସିଏ ବା କଅଣ କରିବ? ଆଜିକାଲି ଯୁଗରେ ୟୁ.ଜି.ସି. ସ୍କେଲ୍ ତ ଟା' ଖିଆ ସହିତ ବି ସମାନ ନୁହେଁ। ଆଇ.ଏ.ଏସ୍ ଆଇ.ପି.ଏସ୍ ହେଲେ ତା'ର କିଛି ମାନେ ଅଛି। କିନ୍ତୁ ଆଜିର ଯୁଗରେ ତ କିରାଣୀ ଚାକିରି ତା'ଠୁ ଭଲ। ଆମେ ତ ପୁଣି ଦେଖୁଚୁଁ, ଏହି ଚାକିରିର ଲୋକମାନେ ମୋ ପିଅନକୁ ମଧ ଲୁଚେଇ ଚୋରେଇ ନମସ୍କାରଟିଏ ପକେଇବା ପାଇଁ ସୁଯୋଗ ଖୋଜନ୍ତି। ଭଲ ପୋଷ୍ଟିଂଟିଏ ପାଇଁ ଏମାନେ କେତେ କଅଣ କରିପାରନ୍ତି। ସେ କଥା ଆପଣ ଚିନ୍ତା ମଧ୍ୟ କରି ପାରିବେନି।

ଗୋଟିଏ ଫାଙ୍କା ମନ ନେଇ ମୁଁ ତାଙ୍କ ଆଡ଼କୁ ଅନେଇଲି।

ଟିକିଏ ରହି ସେ କହିଲେ, ଆପଣ ଝିଅକୁ ଏଇ ରାଜନୀତିରେ ରଖନ୍ତୁ ନଚେତ୍ ଜର୍ଣ୍ଣାଲିଜମ୍‌ରେ ଦିଅନ୍ତୁ– ଜୀବନଟା କଅଣ ବୋଲି ସେ ଜାଣି ପାରିବ। ଦୁନିଆଟା କଅଣ, ସେ ଦେଖି ପାରିବ। ମଣିଷ କଅଣ, ସେ ବୁଝି ପାରିବ। ଏ ଦୁଇଟା ପ୍ରଫେସନ ଛଡ଼ା ଆଉ କୋଉ ବୃତ୍ତିଟା ଏବେ ଏକାଠି ମଣିଷକୁ ପଇସା ଓ ପ୍ରତିପତ୍ତି ଦେଇପାରିବ କହିଲେ? ବି ପ୍ରାକ୍ଟିକେଲ। ମୁଁ ତ ତୃତୀୟ କିଛି ଦେଖୁନି।

କଥାବାର୍ତ୍ତା ଭିତରେ ଆମର ସେତେବେଳକୁ ଜଳଖିଆ ସରିଥାଏ। ଧନପତ୍‌ଜୀ କହିଲେ ଏଣିକି ପିଲାମାନେ ଟିକିଏ ବସି ଖୁସି ଗପ ହୁଅନ୍ତୁ। ଆଉ ଆମେ ଟିକେ ବିଜିନେସ୍‌କୁ ଆସିବା। ତା'ପରେ ସେ ମୋ ସ୍ତ୍ରୀ ଓ ତାଙ୍କ ସ୍ତ୍ରୀଙ୍କୁ କହିଲେ, ଆପଣମାନଙ୍କର ଚା, କଫି, ଜୁସ୍, କୋଲଡ୍ର ଡ୍ରିଙ୍କ୍ ଇତ୍ୟାଦି ଯାହାର ଯାହା ଦରକାର ମଗେଇ ନିଅନ୍ତୁ। ଆଉ ଆମେ ଟିକେ ଏ ପାଖରେ ବସୁଚୁଁ। ସେ ମୋ ହାତ ଧରି ବିରାଟ ଡାଇନିଂ ହଲ୍‌ର ଗୋଟାଏ କଣରେ ପଡ଼ିଥିବା ସୋଫା ଆଡ଼କୁ ଟାଣି ନେଇଗଲେ।

ସୋଫାରେ ବସୁ ବସୁ ମୁଁ ତାଙ୍କୁ କୃତକୃତ୍ୟ ହେଇ କହିଲି, ଆପଣ ପ୍ରଥମ ଦେଖାରୁ ମୋତେ ଏପରି ଭାବରେ ନିଜ ଆଡ଼କୁ ଟାଣି ନେଇଚନ୍ତି ଯେ ମୁଁ ସେଥିରୁ ମୁକୁଳି ପାରୁନି କହିବା ଠିକ୍ ହେବନି, ବରଂ ମୁଁ କିପରି ସେ ଋଣ ଶୁଝିବି, ସେ କଥା ମଧ୍ୟ ବୁଝି ପାରୁନି।

ସେ କହିଲେ, ରାଜନୀତିରେ ଏସବୁ ଅତି ସାମାନ୍ୟ କଥା। ଏଇ ଦେଖନ୍ତୁ, ମୁଁ ମୋ ନିଜ ହାତରେ ବହୁ ନାରୀଙ୍କୁ ବିଧବା କରିଚି ଏବଂ ପୁଣି ବହୁ ବିଧବାଙ୍କୁ ସଧବା ମଧ୍ୟ କରିଚି। ଏଥିରେ କୁଆଡ଼େ ମୋର ଏ ଅଞ୍ଚଳରେ ନାଆଁ ଅଛି। କିଛି ଲୋକ ଏମିତି ପ୍ରଚାର କରନ୍ତି। ରାଜନୀତିରେ ଏ ସବୁ ପ୍ରଚାରକୁ କାନ ଦିଆ ଯାଏନି। କିନ୍ତୁ ମୋ ନିଜ ପାଇଁ ତ ମୁଁ କିଛି କରିନି, ଯାହା କରିଚି, ଗୋଟାଏ ସୁସ୍ଥ ରାଜନୀତି ପାଇଁ। ଅସଲ କଥା ହେଉଚି, ଆପଣଙ୍କ ହାତରେ ଯଦି କ୍ଷମତା ନାହିଁ, ତେବେ ରାଜନୀତି କେମିତି ହେବ, ଶାସନ ମଧ୍ୟ କେମିତି ହେବ ?

ଟିକିଏ ରହି ସେ ପୁଣି କହିଲେ, ପ୍ରଧାନମନ୍ତ୍ରୀ ଯେ ମୋତେ ଏତେ ଭଲ ପାଆନ୍ତି, ତା'ର କାରଣ କଅଣ ? ତା'ର ଗୋଟିଏ କାରଣ ହେଲା ଯେ ମୋ ହାତରେ ପ୍ରଚୁର କ୍ଷମତା। ତା'ର ମାନେ ମୁଁ ପାର୍ଲାମେଣ୍ଟରେ ଥାଏ କି ନଥାଏ, ମୋ ହାତରେ କ୍ଷମତା ଅଛି। ପାର୍ଲାମେଣ୍ଟ ଆଉ କଅଣ ? ଏମିତି ତ ଅନେକ ଯାଉଚନ୍ତି। ତା'ର କଅଣ ମୂଲ୍ୟ ଅଛି, ଯାହା ପଛରେ ଯେତିକି ବେଶି ସମର୍ଥନ ଅଛି, ସେ ସେତିକି ଶକ୍ତିଶାଳୀ।

ସେ ଟିକିଏ ରହିଯାଇ ପ୍ଲେଟ୍‌ରୁ କାଜୁଟିଏ ଉଠେଇ ନେଲେ ଓ ତାଙ୍କ ଦୁଇ ଦାନ୍ତର ମଧ ଭାଗରେ ରଖି କାଟି ଦୁଇ ଖଣ୍ଡ କରିଦେଲା ପରେ ମୋତେ କହିଲେ, ମଧ୍ୟପ୍ରଦେଶ, ଉତ୍ତର ପ୍ରଦେଶ, ହରିଆନା, ପଶ୍ଚିମବଙ୍ଗ ଏବଂ ବିହାରର ଅର୍ଦ୍ଧାଧିକ ସଭ୍ୟ ମୋତେ ସମର୍ଥନ କରନ୍ତି। ଖାଲି...

ଅତିଥି ଭବନର ମେନେଜର ଆସି ପହଞ୍ଚିଲେ। ସେ କହିଲେ, ଦିଲ୍ଲୀରୁ କଲ୍ ଆସିଚି। ଆପଣ କଥା ହୁଅନ୍ତୁ।

ଧନପତଜୀ ଫୋନ୍ ଉଠେଇଲେ। 'ହଁ, ଦିଅନ୍ତୁ।' ପରବର୍ତ୍ତୀ କଥାଟା ଥିଲା ଏମିତି: 'ସାର୍। ମୁଁ ତ କହିଚି, ମୁଁ ସେଥିରେ ରାଜି ଅଛି। ସେ ବିଲ୍‌ଟାକୁ ମଧ୍ୟ ମୁଁ ଅଟକେଇ ରଖିବାକୁ କହି ଦେଇଚି। ପାର୍ଲାମେଣ୍ଟ କଥା ମୁଁ ବୁଝିବି। ଏ ସବୁ କାମ ଜେନେଭା ଯିବା ପୂର୍ବରୁ ସରିଥିବ। ଥେଙ୍କ୍ ଇଉ ସାର୍।' ସେ ଫୋନ୍‌ଟା ଥୋଇ ଦେଲେ।

ତା'ପରେ ମୋତେ ଚାହିଁ ହସିଦେଲେ। ମୁଁ କିଛି ବୁଝି ନ ପାରି ଅନାଇ ରହିଲି। ସେ କହିଲେ, ସବୁ ସିକ୍ରେଟ କଥା ମୁଁ କହି ପାରିବିନି। ତେବେ, ଏତିକି କହିପାରେ ଯେ ଏପରି ଗୋଟାଏ ବିଲ୍ ଆମ ମନ୍ତ୍ରଣାଳୟ ଆଣି ଥାଆନ୍ତା, ଯାହା ପାଶ୍ ହେଇଥିଲେ, ବର୍ତ୍ତମାନ ଅବସ୍ଥାରେ ସରକାରକୁ ଅନ୍ତତଃ ପକ୍ଷେ ପାଞ୍ଚ ଛଅ ହଜାର କୋଟି ଟଙ୍କା ଶ୍ରମିକମାନଙ୍କ ପାଇଁ ଖର୍ଚ୍ଚ କରିବାକୁ ପଡ଼ି ଥାଆନ୍ତା। ଅନ୍ୟ ପକ୍ଷରେ ଆସନ୍ତା ଇଲେକସନରେ ଆମର ପ୍ରସ୍‌ପେକ୍ଟ ଦୁର୍ବଳ ହେଇ ପଡ଼ିଥାଆନ୍ତା। ଅପୋଜିସନ୍ ବେଶି ଫାଇଦା ଉଠେଇ ଥାଆନ୍ତା। ଶପଥ ନେବା ପୂର୍ବରୁ ମୁଁ ପ୍ରଧାନମନ୍ତ୍ରୀଙ୍କୁ ଏଇ ରକମ ଏକ ପ୍ରତିଶ୍ରୁତି ଦେଇଥିଲି।

ମୁଁ ଏତେବେଳେକେ ବୁଝିଲି ରାଜନୀତି କେତେ ଗହୀର ଜଳର ମାଛ। ତାକୁ ଧରିବାକୁ ହେଲେ ଖାଲି ଉତ୍ତମ କାରିଗରୀ ନୁହେଁ ଭଣ୍ଡମାନର କଳା କୌଶଳ ମଧ୍ୟ ଦରକାର।

ସେ କହିଲେ, ଆପଣ ଓଡ଼ିଶା କଥା କଅଣ ଚିନ୍ତା କରୁଚନ୍ତି?

ମୁଁ କହିଲି, ପ୍ରାଇମେରୀ ଷ୍ଟେଜରେ ଆମ ଖଣି ଓ ଶିଳ୍ପାଞ୍ଚଳମାନଙ୍କରେ ଜାତୀୟ ସ୍ତରରେ ଗୋଟାଏ ରିଓରୀଏଣ୍ଟେସନ୍ କୋର୍ସ ଖୋଲି ସେମାନଙ୍କୁ ମୋଟିଭେଟ୍ କରିବାକୁ ହେବ। ତା ପରେ ଗୋଟାଏ କେଡ଼ର୍ ସୃଷ୍ଟି ହେଲାପରେ....। କିନ୍ତୁ ଏ ସବୁଥିରେ ଆପଣଙ୍କ ସାହାଯ୍ୟ ଓ ସହଯୋଗ ଏକାନ୍ତ ଆବଶ୍ୟକ।

ସେ କହିଲେ, ଏକଦମ୍ ଠିକ୍ ଅଛି। ମୁଁ ଥରେ ଦି ଥର ସେଠାକୁ ଗଲେ ସବୁ ଠିକ୍ ହେଇଯିବ।

ଆମେ ଦୁହେଁ ହସି ଉଠିଲୁଁ।



(ଝଙ୍କାର ଶାରଦୀୟ ବିଶେଷାଙ୍କ—୧୯୯୫)

# କାଚଘର

ସେଥର ସେମାନେ ମୋତେ ନିହାତି ବାଧ୍ୟ କଲେ। ସେମାନେ କହିଲେ ଏଥର ଯଦି ତୁମେ ଆମ ସାଥିରେ ନ ଯାଅ ତେବେ ଆମକୁ ଆଉ ଦୋଷ ଦେବନି। ଆମେତ ବରାବର କହୁଛୁଁ। ଥରେ ଅଧେ ନୁହେଁ। କେତେଥର କହିଲୁଣି। କେତେ ଥର ଟିକେଟ କାଟି କେନସେଲ ମଧ୍ୟ କଲୁଣି।

ପୁଅ ଟିକେ ବେଶି ବିରକ୍ତ ହେଲାପରି ଲାଗିଲା। ସେ କହିଲା ମୋତେ ଲାଗୁଛି ତମେ ଆମକୁ ଠକୁଛ। ମୋ ପାଖରେ ବସିପଡ଼ି ସେ କହିଲା 'ସତରେ କହିଲ— ତମେ କେତେଥର କହିଚ ଦିଲ୍ଲୀ ଯିବ ବୋଲି। ଏବଂ ପରେ ମନା କରିଚ ଗୋଟାଏ ମିଛ ବାହାନାରେ। ମିଛରେ ତମେ ସେଥର କହିଲ ଗାଁରୁ ରତନ ଲେଖିଚି ସେଠି ହାଇସ୍କୁଲରେ ଏ ବର୍ଷ ପ୍ଲସ୍ ଟୁ ଖୋଲିବାର ସବୁ ଠିକ୍ ହେଇଚି। ଆଉ ସେମାନେ ତମକୁ ଡାକିଛନ୍ତି ଉଦ୍‌ଘାଟନୀ ଉତ୍ସବରେ ଯୋଗ ଦେବାକୁ। କାହିଁ ରତନତ ସେସବୁ କିଛି ମୋତେ ଦେଇଥିବା ଚିଠିରେ ଲେଖିନି। ତମେବିତ କାହିଁ ଗାଁକୁ ଗଲନି ?

ବୋହୂର ଅଭିମାନ ଟିକିଏ ବେଶି ହେଲା ପରି ଲାଗିଲା ସେଥର। ସେ କହିଲା ମୁଁ କହିଲି ଆପଣ ଚାହିଁଲେ ଆମେ ଏଥର ଟିକଟ ମଧ୍ୟ ପଠେଇ ଦେବୁଁ। ଖାଲି ସବୁବେଳେ 'ଦେଖିବା' 'ଏଇ ଶୀତଟା ଯାଉ', 'ଏ ଖରାଟା ପରେ' କହି ଟାଳୁଛନ୍ତି। ମୋ ଜାଣିବାରେ ଯାଭିତରେ ତିନିଟା ଶୀତ, ତିନିଟା ଖରା ଚାଲି ଗଲାଣି। ସେ ମୋ ପାଖରେ ଥିବା ଖାଲି ଚା କପ୍‌ଟା ଉଠେଇ ନେଇ ଚାଲିଗଲା। ସେଥର ତା' ଚାଲିରେ କେମିତି ଏକ ଅସ୍ୱାଭାବିକତା ଦେଖିଲି। ମୁଁ ଲକ୍ଷ୍ୟ କରୁଥାଏଁ ନ ଦେଖିଲା ପରି।

ଖଟ ଉପରେ ବସି ମୁଁ ସେମିତି ପେଟେଇ ପଡ଼ି କାଗଜଟାକୁ ଏପଟ ସେପଟ କରୁଥାଏଁ। ଦିନର ଅର୍ଦ୍ଧାଧିକ ସମୟ ମୋର ସେମିତି ପେଟେଇ ପଡ଼ି କାଗଜ ସାଥିରେ ବା ନହି, ମେଗାଜିନ ସାଥିରେ କଟେ। ମୋର ସ୍ପାଇନାଲ ଟ୍ରାବୁଲ ଥିବାରୁ ମୁଁ ବେଶି ସମୟ ଚେୟାର କିମ୍ବା ସୋଫାରେ ବସି ରହିପାରେନା। ମୋର ଅବସର ପରର ଜୀବନ ଏମିତି କଟେ।

ପୁଅ ବି ଏଥର ଚୌକିଆଟେ ଟାଣିଆଣି ମୋ ପାଖରେ ପେଟେଇ ପଡ଼ିଲା ଏବଂ ମୋର ଅସ୍ୱାଭାବିକ ନୀରବତା ଦେଖି କେମିତି ମୋତେ କଥା କୁହେଇବ ଏବଂ

ମୋ'ଠୁ ସନ୍ତୋଷଜନକ ଜବାବଟିଏ ହାସଲ କରିବ ତାକୁଇ ଅପେକ୍ଷା କରୁ କରୁ ସେ ବୋଧେ ନିରୁତ୍ସାହିତ ହେଇ ପୁଣି ଉପରକୁ ଚାହିଁ କ'ଣ ଭାବୁଥାଏ।

ମୋ ପୁଅର ବୟସ ୩୫ ବର୍ଷ। ତାର ଗୋଟିଏ ପୁଅ। ତାର ବୟସ ସାତ ବର୍ଷ। ସେ ଦିଲ୍ଲୀରେ ଗୋଟେ ରେସିଡ଼େନ୍‌ସିଆଲ ସ୍କୁଲରେ ପଢ଼େ। କୁଆଡ଼େ ଭାରତର ଏକ ନମ୍ବର ସ୍କୁଲ ଭିତରୁ ଗୋଟିଏ। ତେଣୁ ପୁଅକୁ ଦିଲ୍ଲୀରେ ଛାଡ଼ି କେବଳ ଏ ଦୁହେଁ ଆସି ଥାଆନ୍ତି। ସାତ ଆଠ ଦିନ ମୋଠି କଟେଇ ପୁଣି ସେମାନେ କର୍ମକ୍ଷେତ୍ରକୁ ଫେରିଯିବେ।

ବାପା, କିଛି କହୁନ କାହିଁକି? ପୁଅ ପୁଣି ମୋତେ ତାଗିଦ କଲା। ବୋହୂ ଫେରିଆସି ମୋ ଖଟର ଗୋଟିଏ କଣକୁ ତଳକୁ ଗୋଡ଼ ଝୁଲେଇ ବସିଲାଣି। ବୋଧେ ଦୁହେଁ ଏଥର ଠିକ କରିଛନ୍ତି ଯେମିତି ହେଉ ମୋ'ଠୁ ପ୍ରତିଶ୍ରୁତି ଆଦାୟ କରିବେ।

ବିପତ୍ନୀକ ସୁରେନ୍ଦ୍ର ଚୌଧୁରୀଙ୍କ ଭୂମିକାରେ ମୁଁ ମୋ ମନ ଭିତରେ କିଛି ଉତ୍ତର ଖୋଜିବା ପୂର୍ବରୁ ପୁଅକୁ ଅନେଇଲି। ସେ ଯେମିତି ଉପରକୁ ମୁହଁ କରି ଶୋଇଛି। ହାତ ଗୋଡ଼ ହଲାଉଛି। ଯେମିତି ସେ କରୁଥିଲା ୩୩/୩୪ ବର୍ଷ ତଳେ। ଫାଙ୍କା ମନରେ ମୋ ପାଖରେ ଶୋଇ ଛାତ ଉପରକୁ ଦେଖୁଥିଲା କିଛି ନ ଦେଖିଲା ପରି, କିଛି ନ ଜାଣିଲା ପରି, ଆଉ କିଛି ନ ବୁଝିଲା ପରି।

ଆଉ ସେତେବେଳେ ତାର ମାଆ ବାରମ୍ବାର ରୋଷେଇ ଘରୁ ଦଉଡ଼ି ଆସୁଥିଲେ ଏବଂ ମୋତେ ତାଗିଦ କରୁଥିଲେ, "ଖବର କାଗଜ ପଢ଼ ମୋର ଆପତ୍ତି ନାହିଁ, କିନ୍ତୁ ପୁଅକୁ ଦେଖୁଥାଅ। ମୁଁ ବାରମ୍ବାର ସେଠୁ ଆସିପାରିବିନି।"

ମୋର ହଁ ଉପରେ ତାଙ୍କର ବିଶ୍ୱାସ ନ ଥାଏ। କେବେବି ନ ଥିଲା। ମୁଁ ଯେତେଥର ହଁ କଲେ ସେ ସେତେଥର ଆସୁଥାଆନ୍ତି ଏବଂ ମନେ ପକେଇ ଦିଅନ୍ତି।

ମୁଁ ସେଇ ପିଲାକୁ ଦେଖୁଥିଲି। ତାରି ଭିତରେ ମୁଁ ସେ ଦିନର ସେ ଶିଶୁ ସୁଲଭତାକୁ ଲକ୍ଷ୍ୟ କରୁଥିଲି।

"ବାପା ପ୍ରକୃତରେ ଖବର କାଗଜ ପଢୁଚନ୍ତି ବୋଲି ମୋର ମନେ ହେଉନି।" ବୋହୂ ମୋତେ ଚାହିଁ ହସି ହସି କହିଲା।

ମୁଁ ଚମକି ପଡ଼ିଲି। ମୋର ନିଛକ ଦୁର୍ବଳତାର ମୁହୂର୍ତ୍ତଟିକୁ କିଏ ଯେମିତି ଖପ୍ କରି ଧରି ପକେଇଲା ଆଉ ମୁଁ ଆତ୍ମରକ୍ଷା ପାଇଁ ଚିତ୍କାର କଲି, ଆହା ଛାଡ଼ ଛାଡ଼।

ଦେଖିଲି ପୁଅ ଓ ବୋହୂ ଦୁହିଁଙ୍କର ଆଖି ଏକାଠି ହେଇ ଯାଇଛି ଏବଂ ସେମାନଙ୍କ ଓଠରୁ ଗୋଟାଏ ପାହାଡ଼ି ଝରଣାର ଏକଦମ୍ ନିର୍ମଳ ପାଣି ପରି ହସ ଖଳ ଖଳ ହେଇ ତଳକୁ ପହଁରି ଯାଉଛି।

କି ଉତ୍ତର ମୁଁ ଦେବି ସେମାନଙ୍କୁ। ଏଇ ଘରେ ମୋର ଅତୀତମାନେ ଅନେକ ଦିନୁ ବସାବାନ୍ଧି ଅଳନ୍ଧୁ ଜମେଇ ସାରିଛନ୍ତି। ସେ ଅଳନ୍ଧୁକୁ ଛୁଇଁ ଦେଲା ମାତ୍ରେ ହାତରେ ଜଡ଼ିଯାଇ ସାଲୁବାଲୁ ହୁଏ ସତ; ତଥାପି ତାକୁ ଛୁଇଁବାକୁ ମନ ଗହ ଗହ ହୁଏ। ସେ ମମତାକୁ ଜାବୁଡ଼ି ଧରି ରଖି ହେଉ ନଥିଲେ ମଧ୍ୟ ଛାଡ଼ି ହୁଏନା। ଏଇ ଘରେ, ଏଇ କୋଠରୀ, ଏଇ ଆଲମାରୀ, ବହିଥାକ, ମେଗାଜିନ୍ ସମସ୍ତେ ମୋର ଓ ଅତି ଆପଣାର। ସେମାନଙ୍କୁ ଦିନଟିଏ ନ ପାଇଲେ ମୋ ଭିତରଟା କେମିତି କରତି ହେଇଯାଏ। ତା ସତ୍ତ୍ୱେ ଏଇ ପୁଅ ତା ପିଲାକାଳେ କେତେ ବହିର କଭର ଚିରିଛି। କେତେ ମେଗାଜିନ୍‌ର ପୃଷ୍ଠାକୁ ଫଡ଼ଫଡ଼ କରି ଚିରି ଗୁଡ଼ି ଉଡ଼େଇଛି। ତାର ଅଭିଜ୍ଞା ସ୍ୱାକ୍ଷର ଏବେବି ଜଳଜଳ କରି ମୋତେ ଦେଖୁଛି। ହୁଏତ ସେତେବେଳେ ସେ ଭାବୁଥିଲା ଯେ ଏ ଲୋକଟା ମୋ ଅପେକ୍ଷା ଏ ବହି ଗୁଡ଼ାକୁ ବେଶି ଭଲ ପାଉଚି। ତେଣୁ ସେ ସବୁକୁ ନିଃଶେଷ କରାଯାଉ।

ଆଉ ଆଜି? ଆଜି ବି କଅଣ ତା ମନରେ ସେମିତି କିଛି ଗୋଟେ ଧାରଣା ଘୂରି ବୁଲୁଚି ଯୋଉଁଥି ପାଇଁ ସେ ମୋତେ ମୋ ବହିଠାରୁ ଅଲଗା କରି ତା ସାଥିରେ ଦିଲ୍ଲୀ ନେଇ ଯିବାକୁ ଚାହୁଁଚି?

ମୁଁ ତାକୁ ଚାହିଁଦେଲି ଏବଂ ସେ ଦିଜଣଙ୍କ ହସରେ ଅଯାଚିତ ଭାବରେ ନିଜକୁ ସମର୍ପି ଦେଲି।

ଏବେ ଏବେ କଅଣ ତମମାନଙ୍କ ସାଥିରେ ନ ଗଲେ ଚଳିବ ନାହିଁ କି? ମୁଁ କହିଲି ବଡ଼ ହାଲୁକା ଭାବରେ।

ସବୁବେଳେ ତ ଆପଣଙ୍କର ସେଇ ଗୋଟିଏ କଥା। ବୋହୂ କହିଲା ମୋତେ ତାଗିଦ୍ କଲା ସ୍ୱରରେ।

ପୁଅ କଥା ଯୋଡ଼ିଲା ତା ସାଥିରେ। ଏଇଟା ଦିଲ୍ଲୀ ଯିବାର ଉପଯୁକ୍ତ ସମୟ। ଖରା ନାହିଁ କି ଶୀତ ନାହିଁ। ବର୍ଷା ବି ନାହିଁ। ଏବେ ତୁମକୁ ସେଠି ଭଲ ଲାଗିବ। ଟିକିଏ ବୁଲାବୁଲି କରି ପାରିବ।

ବୋହୂ କହିଲା, ଆପଣତ ପ୍ରାୟ ୨୦ ବର୍ଷ ତଳେ ଦିଲ୍ଲୀ ଯାଇଥିଲେ। ଏବେ ଆଉ ସେ ଦିଲ୍ଲୀ ନାହିଁ। କେତେ ବଦଳି ଗଲାଣି। ଆପଣ ଦେଖିଲେ ଆଶ୍ଚର୍ଯ୍ୟ ହେଇ ଯିବେ। ହୁଏତ ଚିହ୍ନି ପାରିବେନି। ଭାବିବେ ଏଇଟା ଦିଲ୍ଲୀ କି ଆଉ କୋଉ ଗୋଟେ ଫରେନ କଣ୍ଟ୍ରିର ସହରଟେ ହେଇଥିବ ବୋଧେ।

'ସେ ଠିକ୍ କହୁଚି ବାପା। ପୁଅ କହୁ କହୁ ବିଛଣାରେ ଉଠି ବସିଲା। ଏଇଟା ଯେ ଖାଲି ଗୋଟେ ରାଜଧାନୀ ବୋଲି ତା ଚେହେରାରେ ପରିବର୍ତ୍ତନ ଆସିଚି ତା ନୁହେଁ। ସେଠା ଲୋକଙ୍କର ଲାଇଫ୍ ଷ୍ଟାଇଲ୍ ମଧ୍ୟ ଦେଖିବାର କଥା। ତା ଛଡ଼ା ସବୁ କେମିତି ଗୋଟେ ସିଷ୍ଟମେଟିକ୍।'

ବୋହୂ କହିଲା, ଆପଣ ଏଥର ମନା କରନ୍ତୁନି। ଆପଣ ଚାଲନ୍ତୁ ସେଠି ଆପଣଙ୍କୁ ଭଲ ଲାଗିବ, ଆମକୁ ବି ଭଲ ଲାଗିବ। ଅନ୍ତତଃ ଆମର ସମୟଟା ଟିକିଏ ଆରାମରେ କଟିବ। ଆପଣଙ୍କୁ ଏଠି ଛାଡ଼ି ଆମେ ନିଶ୍ଚିନ୍ତ ହେଇ ପାରୁନୁଁ। ତା ଛଡ଼ା ଦେହପା କଥା। ସେଠି ଅଲ ଇଣ୍ଡିଆ ଇନ୍‌ଷ୍ଟିଚ୍ୟୁଟ ଠାରୁ ଆରମ୍ଭ କରି ବାତ୍ରା ହସପିଟାଲ ଯାଏ କେତେ ବଡ଼ ବଡ଼ ହସପିଟାଲ ଅଛି। ଏଠିତ ସର୍ଦ୍ଦି କାଶ ପାଇଁ ମଧ୍ୟ ଭଲ ଡାକ୍ତରଟିଏ ମିଳିବନି।

ତାଛଡ଼ା ଆପଣଙ୍କୁ ସେଠି ମୋଟେ ବୋର ଲାଗିବନି। ପୁଅ କହିଲା ତା ସାଥିରେ।

ବୋରତ ମୁଁ କେବେହେଲେ ଫିଲ କରେନା। ଜୀବନର ଅର୍ଦ୍ଧାଧିକ ସମୟତ ମୁଁ ନିଃସଙ୍ଗତାର ସମୁଦ୍ର ଭିତରେ ଇହଡ଼ି ଭାଙ୍ଗି କଟେଇଛି। ଏକୁଟିଆ ତା ଭିତରେ ପାଲ ଟାଣି ଆହୁଲା ମାରି ମାସ ପରେ ମାସ, ବର୍ଷ ପରେ ବର୍ଷ ଖାଲି ବୁଲିଚି। କିନ୍ତୁ ବୋରଡ଼ମ୍? ମୋତେ କେବେ କାବୁ କରି ପାରିନି। ଭୂତକୁ ଡରି ମୋ ହାତରେ ମୋ ମାଆ ତଉଁରିଆ ବାନ୍ଧିଲା ପରି ବୋରଡ଼ମ୍‌କୁ ଡରିବା ପୂର୍ବରୁ ମୋ ହାତରେ ବହିଟିଏ କି ମେଗାଜିନ୍‌ଟିଏ ଧରେଇ ଦେଉଥିଲେ ମୋ ସ୍ତ୍ରୀ। ଆଜି ସେ ନ ଥିଲେ ମଧ୍ୟ ସେ ତଉଁରିଆ ଅଛି ମୋ ହାତରେ। ତେଣୁ ନିର୍ଜନତାର ଏ ବିଶାଳ ଶୂନ୍ୟତାର କୋଠରୀ ଭିତରେ ଭୂତ, ବୋରଡ଼ମ ଏବଂ ମୋ ଭିତରେ ଅନେକ ଦିନୁଁ ଗୋଟେ ଅନାକ୍ରମଣ ଚୁକ୍ତି ସ୍ୱାକ୍ଷରିତ ହେଇ ଯାଇଚି ଆମ ସମସ୍ତଙ୍କ ଅଜାଣତରେ।

ବୋହୂ କଥାରେ ମୁଁ ହସିଦେଲି। କହିଲି ବୋର୍ ଆଉ କଅଣ? ତମେ ସବୁଥିଲେ ମୋତେ ଆଉ ସେଠି ବୋର୍ କାହିଁକି ଲାଗିବ?

ତେବେ ଆଜି ରିଜରଭେସନ କରି ଦେଉଚି। ପୁଅ ମୋଠୁ ପ୍ରତିଶ୍ରୁତି ଦାବି କରି ବସିଲା।

ତମେ ଆଉ ପଚାରୁଚ କଅଣ ମ? ଯାଅ, ଏଇ ରାଜଧାନୀ ଏକ୍ସପ୍ରେସରେ କରିଦିଅ। ଏ.ସି. ଥ୍ରୀ ଟାୟାରଟା ସେତେ ଭଲ ନୁହେଁ। ବଡ଼ କନ୍‌ଜେସ୍‌ଟେଡ୍ ଲାଗେ ମୋତେ। ଆସିଲା ବେଳେ ବଡ଼ ବିରକ୍ତ ଲାଗିଲା। ବରଂ ତମେ ଏ.ସି.ଟୁ ଟାୟାରରେ କରି ଦିଅ। ଆମେ ଏମିତି ଠିକେ ଆରାମରେ ଯାଇ ପାରିବା।

ପୁଅ ବୋହୂ ଦୁହେଁ ଘରୁ ବାହାରି ଗଲେ।

ଗୋଟାଏ ଇଚ୍ଛା ଓ ଅନିଚ୍ଛାର କ୍ରମ ବର୍ଦ୍ଧମାନ ଟଗ୍ ଅଫ୍ ୱାର୍ ଭିତରେ ମୁଁ କେତେ ବେଳେ କେମିତି ଓ କୋଉ ଆଡ଼କୁ ଢଳି ପଡ଼ିଲି ସେ କଥା ଜାଣେନା।

ଯେଉଁ ନିଃସଙ୍ଗତାର ନିଶୁଣୀରେ ମୋତେ ଏଠି ପ୍ରତିଦିନ ଚଢ଼ିବାକୁ ଓ ଓହ୍ଲେଇବାକୁ ହୁଏ, କାନ୍ଥ ବାଡ଼ ସହିତ ଆତ୍ମୀୟତା ସ୍ଥାପନ କରିବାକୁ ହୁଏ, ସେଠି ବି ତ ସେଇ ଅବସ୍ଥା। ପୁଅ ବୋହୂ ଦୁହେଁ ଚାକିରିଆ। ପୁଅ ତ କାମରେ ଦିନମାନ

ଯେତିକି ବ୍ୟସ୍ତ, ବୋହୂ ତା ଅପେକ୍ଷା ଆହୁରି ବେଶି। ସକାଳ ୮ଟାରେ ଯାଇ ସନ୍ଧ୍ୟା ୭ଟାରେ ଫେରନ୍ତି। ଠିକା ଚାକରାଣୀ ଆସି ସବୁ କାମ କରି ଦେଇଯାଏ। ସେ ତା ସମୟରେ ଆସେ। ଏ ମାନଙ୍କ ଆସିବା ନ ଆସିବାକୁ ସେ ଅପେକ୍ଷା କରେନା। ରନ୍ଧା ରନ୍ଧି କରି ଥୋଇ ଦେଇ ଯାଏ। ଖୁବ୍ କ୍ୱଚିତ୍ ବୋହୂକୁ କେତେବେଳେ କିଛି କରିବାକୁ ପଡ଼େ। ତେବେ ଅଧିକାଂଶ ଦିନ ସେମାନଙ୍କର କ୍ଲବ୍, ହୋଟେଲର ପାର୍ଟି ଏବଂ ଫାଷ୍ଟଫୁଡ୍‌ରେ କଟେ। ଅପୂର୍ବ ଲୋକପ୍ରିୟତା ଏଇ ଫାଷ୍ଟଫୁଡ୍‌ର ବଢ଼ି ଯାଇଚି ଏଇ କେଇଟା ଦିନରେ।

ଦିଲ୍ଲୀରେ ପହଞ୍ଚିବାର ଦ୍ୱିତୀୟ ଦିନ ଟେଲିଫୋନ ଆସିଲା ଯେ ସଂଜୟ ଆସି ଆଉ ଗୋଟିଏ ଦିନ ପରେ ପହଂଚିବ।

ସଂଜୟ ମୋର ନାତି। ଦିଲ୍ଲୀର ଏକ ଖ୍ୟାତନାମା ରେସିଡ୍ରେନ୍‌ସିଆଲ୍ ସ୍କୁଲରେ ପଢ଼େ। ଛଅ ମାସରେ ଥରେ ସେ ଘରକୁ ଆସେ। ସାତ ଆଠଦିନ ପରେ ପୁଣି ଫେରିଯାଏ।

ଖବର ପାଇ ପୁଅ ବୋହୂ ଖୁବ୍ ଖୁସି ହେଇ ଗଲେ। ସେମାନେ ତାକୁ ଛଅ ମାସ ହେଲା ଦେଖି ନାହାନ୍ତି। ମୁଁ ଦୁଇ ବର୍ଷ ହେଲା ଦେଖିନି। ଦୁଇ ବର୍ଷ ଆଗରୁ ସେ ଯେତେବେଳେ ଭୁବନେଶ୍ୱର ଆସିଥିଲା ସେତେବେଳେ ସେ ଏ ରେସିଡ୍ରେନ୍‌ସିଆଲ ସ୍କୁଲରେ ଏଡ୍‌ମିସନ ନେଇ ନଥିଲା। ଆଉ ଗୋଟିଏ ଇଂଲିଶ ମିଡ଼ିୟମ ସ୍କୁଲରେ ପଢୁଥିଲା। ତେଣୁ ସେ ସେତେବେଳେ ତା ବାପ ମାଆଙ୍କ ପାଖରେ ହିଁ ରହୁଥିଲା।

ସଂଜୟ ଅସାଧାରଣ ମେଧାବୀ ଛାତ୍ରଟିଏ। ଆଜିଯାଏ ସବୁବେଳେ କ୍ଲାସରେ ଟପର ହେଇ ଆସୁଛି। କେବେ ତଳକୁ ଖସିନି। ସେ ଯେତେବେଳେ ମୋ ସହିତ ମିଶୁଥିଲା ସେତେବେଳେ ସେ ପ୍ରଶ୍ନ ପରେ ପ୍ରଶ୍ନ ପଚାରି ମୋତେ ଅତିଷ୍ଠ କରି ଦେଉଥିଲା। ମୋ ପାଖରେ ଶୋଇବ, ମୋ ସହିତ ଖାଇବ, ମୋ ସହିତ ବୁଲି ଯିବ, ମୋ ସହିତ କ୍ଲବକୁ ଯିବ, ଏପରିକି ମୁଁ ମାର୍କେଟ ଗଲେ ସେ ମୋ ପଛରେ ବେଗ୍‌ଟେ ଧରି ଚାଲିବ।

ସଂଜୁର ଶୈଶବାବସ୍ଥା କଟିଚି ଆୟା ଓ କ୍ରେଚ୍‌ରେ। ବାପା ମାଆ ଦୁହେଁ ଛାଡ଼ି ଚାଲି ଯାଆନ୍ତି କର୍ମକ୍ଷେତ୍ରକୁ। ଏବର ପରିବର୍ତ୍ତିତ ସମାଜରେ କ୍ରେଚ୍ ଓ ଆୟା ସଭ୍ୟତାର ଏକ ଆବଶ୍ୟକୀୟ ଅଙ୍ଗ। ମାତୃତ୍ୱ ଓ ପିତୃତ୍ୱ, ସ୍ନେହ ଓ ମମତା ଏସବୁ ଗୋଟାଏ ଉପଚାର। ଅର୍ଥ ଏବେ ମାନବିକ ମୂଲ୍ୟବୋଧର ନୂତନ ଭଣ୍ଡାହାର ଖୋଲି ଦେଇଚି।

ସଂଜୁକୁ ମୁଁ ଦେଖିଛି ଠିକ୍ ତା ବାପ ପରି। ବଡ଼ ତୀକ୍ଷ୍ଣ ତାର ଧୀଶକ୍ତି। ଗୋଟାଏ କଥା କହିଦେଲେ ପ୍ରାୟ ଭୁଲେନା। କଥାବି ମନେ ରଖେ। କଥା ଛଳରେ

ମୁଁ ଦିନେ ତାକୁ ବୁଦ୍ଧ, ଗାନ୍ଧୀ ଓ ସୁଭାଷ ବୋଷଙ୍କ ବିଷୟରେ ଗପ କହିଲା ପରେ ସେ ମୋତେ ଏସବୁ ତାଙ୍କ ସ୍କୁଲରେ କାହିଁକି ସିଷ୍ଟର କେବେ କୁହନ୍ତି ନାହିଁ ବୋଲି ପଚାରି ଥିଲା। ମୁଁ ତାକୁ କହିଲି ସେ ସବୁ ତୁମେ ଆହୁରି ବଡ଼ ହେଲେ ଜାଣିବ। ଏତେ ଛୋଟ ଥିଲାବେଳେ ତମେ ସେମାନଙ୍କ କଥା ଭଲ ଭାବେ ବୁଝି ପାରିବନି। ତାର ଆଖି ବିସ୍ଫାରିତ ହୋଇଗଲା ଯେତେବେଳେ ସେ ମୋ ଠାରୁ ଶୁଣିଲା ଯେ ଗାନ୍ଧୀ ଓ ବୁଦ୍ଧଙ୍କ ଉପରେ ବହୁ ବଡ଼ ବଡ଼ ଓ ମୋଟା ବହିମାନ ଅଛି ଏବଂ ସେ ସବୁଯାକ ବହି ତା ବାପା ମଧ୍ୟ ଏ ଯାଏ ପଢ଼ି ନଥିବ।

ସେଦିନ ସଂଧ୍ୟାବେଳେ ମୁଁ ମାର୍କେଟ ଯାଇ ଚିଲଡ୍ରେନସ୍ ବୁକ୍ କର୍ଣ୍ଣରରୁ ତାପାଇଁ ଆମ ମହାତ୍ମାମାନଙ୍କ ଉପରେ କେତୋଟି ଭଲ ଭଲ ବହି ନେଇ ଆସିଲି। ବହି ଗୁଡ଼ିକ ମୁଁ ଗୋଟେ ସୁନ୍ଦର ଫୋଲଡ଼ର ଭିତରେ ସଜେଇ ରଖିଦେଲି। ସେ ଆସିଲେ ତାକୁ ମୋର ପ୍ରେଜେଣ୍ଟ କରିବା ଉଦ୍ଦେଶ୍ୟ।

ପୁଅ ଓ ବୋହୂ ସେଦିନ ଅଫିସରୁ ଫେରି ସଙ୍ଗେ ସଙ୍ଗେ ପୁଣି ମାର୍କେଟ ଚାଲି ଗଲେ। ଦିନକ ପରେ ସଂଜୁର ଜନ୍ମଦିନ। ତା ପାଇଁ କିଛି କିଣାକିଣି କରିବାର ଥିଲା। ସେମାନେ ଫେରୁ ଫେରୁ ସେଦିନ୍ ରାତି ନଅଟା ହୋଇଗଲା। ମାର୍କେଟରୁ ସଂଜୁ ପାଇଁ କଅଣ ଯେ ନ ଆସିଚି। ଲୁଗାପଟା, ଜୋତା, ନୂଆ ନୂଆ ଇଲୋକ୍‌ଟ୍ରୋନିକ୍ କଣ୍ଢେଇ। ପୁଅ ସେଗୁଡ଼ିକ ସଜେଇ ରଖୁ ରଖୁ ମତେ କହିଲା ପାଞ୍ଚ ଛଅ ହଜାର ଖଣ୍ଡେ ଖର୍ଚ୍ଚ ହୋଇଗଲା।

ମୁଁ ଏଥିରେ ବିସ୍ମିତ ହେଲି ନାହିଁ। ମୋ ପିଲାକାଳେ ମୋ ଜନ୍ମଦିନକୁ କେବଳ ବୋଉ ମୋତେ ଦିଅଁଙ୍କ ଆଗରେ ମୋ ମୁଣ୍ଡକୁ ଜୋରକରି ହାମୁଡ଼େଇ ଦେଇ କହୁଥିଲା ଠାକୁରେ ଯାକୁ ବଞ୍ଚେଇ ରଖ। ସତରେ ବଞ୍ଚିବାହିଁ ଥିଲା ସେତେବେଳେ ମଣିଷର ପ୍ରଥମ ପ୍ରଶ୍ନ। ତାର ସମଗ୍ର ଜୀବନ ସଂଗ୍ରାମ, ଜୀବନର ଯେତେକ ରକ୍ତ କ୍ଷୟ, ରକ୍ତର ସମସ୍ତ କଣିକା ବ୍ୟୟିତ ହେଉଥିଲା କେବଳ ମଣିଷଟିକୁ ବଞ୍ଚେଇ ରଖିବାକୁ।

ଆଉ ବାପା ଯେତେବେଳେ ରାତିରେ ଫେରି ଖାଇ ବସିଲା ବେଳେ ଥାଳିରେ ଥିବା ଚକୁଳି ପିଠା ଦିଖଣ୍ଡ ଦେଖି ଦିଅନ୍ତି ସେତେବେଳେ ବୋଉକୁ ପଚାରନ୍ତି, "ଆଜି କଅଣ କି?"

"ବାବାଜୀର ଜନ୍ମଦିନ ପରା। ଚାରି ଯାଇ ପାଞ୍ଚ ଚାଲିଲା।" ବୋଉ ସେମିତି ରୋଷଇ ଘର ଏରୁଣ୍ଡି ସେ ପାଖରେ ଠିଆ ହୋଇ ମୁହଁଟା ଉପରେ ଅଧା ଓଢ଼ଣା ଟାଣି କହୁଥିଲା। ଯେମିତି ଦାଣ୍ଡ ଖଞ୍ଜାକୁ ଶବ୍ଦଟା ଯାଇ ନ ପାରେ। ବାପା ଆଉ କିଛି କହୁ ନଥିଲେ।

ଆମେ ସବୁ ଟେବୁଲ ପାଖରେ ଯାଇ ଖାଇବାକୁ ବସିଲୁଁ। ଖାଇବା ଆରମ୍ଭ କରି ମୁଁ ପୁଅକୁ କହିଲି ତୋ ପିଲାକାଳେ ତୋ ଜନ୍ମଦିନକୁ ଆମେ ଏମିତି ଭାବରେ ପାଳନ କରୁ ନ ଥିଲୁଁ। ସେମାନେ ହୋ ହୋ ହସି ଉଠିଲେ।

ବୋହୂ କହିଲା ଦିନ ବଦଳି ଗଲାଣି। ମୋ ପିଲା କାଳେ ମୋ ବାପା ଆମ ପାଇଁ ଖଣ୍ଡେ ପେଣ୍ଡ ଫ୍ରକ୍ ଅବଶ୍ୟ ଆଣୁଥିଲେ। କିନ୍ତୁ ବାକି ସବୁ କାମ ବୋଉର। ବୋଉର ଆମ ଘରେ ଠାକୁରମାନଙ୍କର ଯୋଉ ମିଉଜିଅମ ଥିଲା ସେଥିରେ ସେଦିନ ତିନି ଘଣ୍ଟା ପୂଜା ହେଉଥିଲା। ଟିକିଏ ରହି ସେ କହିଲା ବୋଉ ପରେ ସେ ଘରଟା ଏବେ ଚିଡ଼ିଆଖାନା ହେଇଚି।

ଚିଡ଼ିଆଖାନା ? ମୁଁ ପଚାରିଲି।

ନୁହେଁ ଆଉ କଅଣ ? ଘରେ ତ ତାଲା ପଡ଼ିଚି। ତା ଭିତରେ ଯେତେକ ସାପ, ବେଙ୍ଗ, ମୂଷା, ଝିଟିପିଟି, ଅସରପା, ସମସ୍ତଙ୍କର ସେଠି ଅଖଣ୍ଡ ରାଜତ୍ୱ। ସେ ଘର ଖୋଲିବାକୁ ବି କେହି ନାହିଁ। ଭାଇ କୁଆଡ଼େ କହୁଥିଲେ ସେ ଏଥର ଆସିଲେ ତାର ସମସ୍ତ ଆସବାବ ପତ୍ର ସହିତ ନିଲାମ କରିଦେବେ।

ଆଉ ଠାକୁର ? ମୁଁ ପଚାରିଲି।

ଶୁଣୁଥିଲି ସେ ସବୁକୁ ନେଇ ଗାଁ ମନ୍ଦିରର ଗୋଟାଏ କୋଣରେ କୁଢ଼େଇ ଦେଇ ଆସିବେ। ଏଥିପାଇଁ ଭାଇ କୁଆଡ଼େ ସରପଞ୍ଚକୁ ହଜାରେ ଟଙ୍କା ହାତ ଖର୍ଚ୍ଚ ଦେବେ ବୋଲି କହିଥିଲେ।

ମୋଟେ ନୁହେଁ। ପୁଅ କହିଲା। ମୋ ମତରେ ସରପଞ୍ଚକୁ ହଜାରେ ଟଙ୍କା ଲାଞ୍ଚ ନ ଦେଇ ବରଂ ସେ ସବୁକୁ ଗୋଟାଏ ଅଖାରେ ଭର୍ତ୍ତିକରି ନଇରେ ଭସେଇ ଦେବା ଉଚିତ।

ଭାଇ ସେକଥା ମଧ୍ୟ କହୁଥିଲେ। କିନ୍ତୁ ଗାଁ ଲୋକେ କଅଣ କହିଲେ ଜାଣ ? କହିଲେ ଗାଁ ନଈରେ ଠାକୁର ଭସେଇ ଦେଲେ ମଧ୍ୟ ଗାଁକୁ କିଛି ଦେବାକୁ ପଡ଼ିବ। ନଈଘାଟ ଆମର।

ମୁଁ ଉଠି ପଡ଼ିଲି। ମୋଟା ମୋଟି ମୋ ଖିଆ ସରିଥାଏ। ବେସିନ୍‌ରେ ହାତ ଧୋଉ ଧୋଉ କହିଲି ଆଜିକାଲି ସବୁଠି ଆଉ ସବୁ କ୍ଷେତ୍ରରେ ଗୋଟାଏ ନୈତିକ ଚରିତ୍ରର ଦ୍ରୁତ ସ୍ଖଳନ ଘଟୁଚି। ମୁଁ ଭାବୁଚି ମଣିଷ ବଞ୍ଚିଚି କିନ୍ତୁ ତାର ମାନବିକ ଆତ୍ମାଟା ମରି ସାରିଚି।

ସେମାନେ ଚୁପ୍ ହେଇଗଲେ। ସେମାନଙ୍କର ଏମିତି ଚୁପ୍ ରହିବା ଭିତରେ ସେମାନଙ୍କର ମୋ ମନ୍ତବ୍ୟ ପ୍ରତି ସମର୍ଥନ ଥିଲା କି ନା ସେକଥା ଜଣା ପଡୁ ନଥିଲେ ମଧ୍ୟ ମୋ କଥାରେ ସେମାନଙ୍କର ହଠାତ୍ କିଛି ଉତ୍ତର ନଥିଲା ଏକଥା ଜଣା ପଡୁଥିଲା।

ମୁଁ ମୋ ବେଡ୍ ରୁମକୁ ଯିବା ପୂର୍ବରୁ ଦେଖିଲି ପୁଅ ବୋହୂ ଦୁହେଁ ସଂଜୁ ଆସିଲେ ସେ ଯୋଉ ରୁମରେ ରହିବ ସେଇ ଘରଟାକୁ ସେମାନେ ସଜାଇବାରେ ଲାଗିଥାଆନ୍ତି। ତା ପାଇଁ ସ୍ୱତନ୍ତ୍ର ଘର ଭିତରେ ବିଛଣା, ଆସବାବ ପତ୍ର, ପ୍ରସାଧନ ସାମଗ୍ରୀ ଇତ୍ୟାଦି ଯୋଉଠି ଯେମିତି ରଖିବାର କଥା। ମୁଁ ମୋ ରୁମ୍‌କୁ ଫେରି ଆସିଲି। ରାତି ସେତେବେଳକୁ ୧୨ଟା ପାଖାପାଖି। ସଞ୍ଜୁ କାଲି ସକାଳେ ଆସି ପହଞ୍ଚିବ। ମୁଁ ଲାଇଟ୍ ଲିଭେଇ ଦେଲି। ଉଦ୍ଦେଶ୍ୟ ଥିଲା ମୁଁ କାଲି ଭୋରରୁ ଉଠି ନିତ୍ୟକର୍ମ ସାରି ପୁଅ ବୋହୂ ଉଠିବା ପୂର୍ବରୁ ସଂଜୁକୁ ରିସିଭ୍ କରିବାକୁ ପ୍ରସ୍ତୁତ ହୋଇଯାଇ ଥିବି ଯେମିତି।

ପରଦିନ ସତକୁ ସତ ମୁଁ ସକାଳୁ ଉଠି ଦେଖିଲି ପୁଅ ବୋହୂର କବାଟ ଖୋଲିନି। ମୁଁ ଖୁସି ହେଇଗଲି। ମୁଁ ଚଟାପଟ୍ ମୋ କାମ ସାରି ଦେଇ ପ୍ରସ୍ତୁତ ହେଇଗଲି। ପଣ୍ଡିତ ମୋତିଲାଲ ନେହେରୁ ଯେତେବେଳେ ହାରୋ ଫେରନ୍ତା ଜବାହାରଲାଲ୍‌ଙ୍କୁ ରିସିଭ କରିବାକୁ ଯେତିକି ବ୍ୟଗ୍ର ଓ ଉତ୍କଣ୍ଠା ଭିତରେ ପ୍ରତି ମୁହୂର୍ତ୍ତ ଯେମିତି ପେସି ହେଇ ଯାଉଥିଲେ ମୋ ଭିତରେ ସେ ଦିନ ସେମିତିକା ଗୋଟେ ବ୍ୟସ୍ତ ବେଦନା ମୋତେ ଘାରି ପକାଉଥିଲା। ମୁଁ ଭାବୁଥିଲି ସେମାନେ ଆହୁରି କିଛି ସମୟ ଶୋଇ ଯାଆନ୍ତେ କି? ସେମାନଙ୍କ ଉଠିବା ପୂର୍ବରୁ ମୁଁ ଏକୁଟିଆ ସଂଜୁକୁ ରିସିଭ କରି ପକାନ୍ତି। ସେ ଆସିଲା ମାତ୍ରେ ମୁଁ ତାକୁ 'ହାଲୋ ଡିଅର' କହି ଏକାଥରେ ଶୂନ୍ୟକୁ ଟେକି ଦିଅନ୍ତି ଏବଂ ତାକୁ ଏମିତି ମୋ ଛାତିରେ ମିଶେଇ ଦିଅନ୍ତି ଯେ ତା ଭିତରେ ଏବଂ ଶତାବ୍ଦୀ ଓ ଶତାବ୍ଦୀ ଭିତରେ ଥିବା ବ୍ୟବଧାନକୁ ପେଶି ଏକାକାର କରି ଦିଅନ୍ତି। କିନ୍ତୁ ସେତେବେଳେ ଯଦି ତାର ମାଆଘରଥାଏ? ମୋ ସ୍ୱପ୍ନର ଜଉ ଘର ଭିତରୁ ମୁଁ ବାହାରି ଆସିଲି ଏବଂ ଦେଖିଲି ମୋ ସାମନାରେ ଗୋଟାଏ ବିରାଟ ପ୍ରାନ୍ତର ଲମ୍ବିଯାଇଛି କାହିଁ କେତେ ଦୂରକୁ। ସେଠି ଖାଲି ଧୂ ଧୂ ମରୁବାଲି। ଦିଗ୍‌ବଳୟ ସାଥିରେ ମିଶି ଯାଇଚି।

ସଂଜୁ ଆସିଲା ଠିକ୍ ସାତଟା ତିରିଶରେ। ସେ ଆସି ପହଞ୍ଚିଲା ତା ସ୍କୁଲର ଗୋଟିଏ କାରରେ। ଜଣେ କେଅର ଟେକର ଆଣି ତାକୁ ଛାଡ଼ି ଦେଇଗଲେ। ସଂଜୁ କାରରୁ ଓହ୍ଲେଇଲା ବେଳେ ମୁଁ, ପୁଅ ବୋହୂ ସମସ୍ତେ ଗେଟ୍ ବାହାରେ ଅପେକ୍ଷା କରିଥିଲୁଁ। ମୁଁ ତାକୁ ବୃନ୍ତ ସହିତ ଗୋଲାପ ଫୁଲଟିଏ ଦେଇ ସମ୍ବର୍ଦ୍ଧନା ଜଣେଇଲା ବେଳେ ତା ବାପା ତା ମୁଣ୍ଡକୁ ଟିକିଏ ଆଉଁସି ଦେଇଥିଲା ଏବଂ ତା ମାଆ ତାକୁ କୋଳେଇ ନେଇ ତା କପାଳରେ ଚୁମାଟିଏ ଲେଖି ଦେଲା।

କିଛି ସମୟ ପରେ ସେ ମାଆ କୋଳରୁ ଓହ୍ଲେଇ ମୋ ପାଖକୁ ଆସିଲା ଏବଂ ଆମେ ଗେଟ୍ ଭିତରେ ପଶି ଲନ୍ ପାଖେ ପାଖେ ପୋର୍ଟିକୋ ଆଡ଼କୁ ଆସୁଥିବା ବେଳେ ମୋ ହାତକୁ ଧରି ଝିଙ୍କି ଦେଇ ପଚାରିଲା "ଜେଜେ ତମେ କେବେ ଆସିଲ?"

ଏଇ ଦୁଇ ଦିନ ହେଲା ଆସିଚିରେ ବାପା । ତାପରେ କହିଲି ତୁ ଏବେ ବହୁତ ସ୍ମାର୍ଟ ହେଇ ଯାଇଚୁ ।

ସେ ଖାଲି ହସି ଦେଲା । ଆମେ ସବୁ ଘର ଭିତରକୁ ପଶିଗଲୁଁ ।

ସଂଧ୍ୟାରେ ବାର୍ଥଡ଼େ ପାର୍ଟି ମଧ୍ୟ ବେଶ ଢାକ ଢମକରେ ହେଇଗଲା । ସଂଜୁର ଯୋଉ ପୁରୁଣା ସାଙ୍ଗମାନେ ଆସିଥିଲେ ସେମାନେ ସଂଜୁ ସହିତ ଅଳ୍ପ କିଛି ସମୟ କଟେଇ ଚାଲିଗଲେ । ସଂଜୁ ମଧ୍ୟ ଫର୍ମାଲିଟି ରକ୍ଷା କରିବାକୁ ଯାଇ ସେମାନଙ୍କୁ ବିଦାୟ ଦେଲା । ରାତି ୧୨ଟା ବେଳକୁ ସବୁ ଶାନ୍ତ ପଡ଼ିଗଲା ।

ପରଦିନ ପୁଅ ବୋହୂ ଆଉ ଅଫିସ ଗଲେନି । ସେମାନେ ପୁଅ ସହିତ ଗୋଟାଏ ଦିନ କଟାଇବେ ବୋଲି ଠିକ୍ କରିଥିଲେ । ଏ କଥାଟା ଜାଣିଲା ପରେ ମୋତେ ବି ଟିକିଏ ଭଲ ଲାଗିଲା । ପାଞ୍ଚ, ଛଅ ମାସ ପରେ ପିଲାଟା ଯେତେବେଳେ ଆସିଚି ମାତ୍ର ୬/୭ ଦିନ ପାଇଁ, ସେତେବେଳେ ତା ବାପା ମାଆ ଅନ୍ତତଃ ତା ସହିତ ଦୁଇଦିନ ରହିବା ଉଚିତ । ନଚେତ୍ ସେ ବି ବୋର ହୋଇଯିବ ।

ବ୍ରେକ୍‌ଫାଷ୍ଟ ପରେ ମୁଁ ଦେଖିଲି ସଂଜୁ କେମିତି ଟିକିଏ ଗମ୍ଭୀର ଦେଖା ଯାଉଚି । ଆଗରୁ ସେ ଯେମିତି ଜିଭ ଲାଗୁଥିବା ପାଟିରେ ଅନର୍ଗଳ ମୋ ସହିତ ଗପୁଥିଲା କିମ୍ବା ମୋଠୁ ଗପ ଶୁଣୁଥିଲା ସେମିତି ଗୋଟେ ଉଦ୍‌ବେଳନ ମୁଁ ତା ଭିତରେ ଦେଖିଲିନି । ମୁଁ ଦେଖିଲି ସେ ତା ରୁମ ଭିତରେ ମ୍ୟୁଜିକ ସିଷ୍ଟମ ପାଖରେ ଥିବା କେସେଟ୍ ଗୁଡ଼ିକ ଦେଖୁ ଦେଖୁ ପୁଣି ସେ ଗୁଡ଼ିକ ସେମିତି ରଖି ଦେଲା ଏବଂ ନିଜ ବିଛଣା ଉପରେ ଆଖି ବୁଜି ଶୋଇ ପଡ଼ିଲା ।

ମୁଁ ଭିତରକୁ ପଶିଯାଇ ପଚାରିଲି କଅଣ ଶୋଇ ପଡ଼ିଲୁ ଯେ? ସଂଜୁ କହିଲା, ମୋତେ ନିଦ ମାଡୁଚି?

ଆମେ ଭାବିଲୁଁ ଏବେ ଏବେତ ସେ ପରୀକ୍ଷା ସାରି ଆସିଚି । ତା ଛଡ଼ା କାଲି ରାତିରେ ମଧ୍ୟ ତାର ଶୋଇବାରେ ଅନେକ ଡେରି ହେଇଚି ।

ସେଦିନ ଆମର ଲଞ୍ଚଟା ଅପେକ୍ଷାକୃତ ଶିଘ୍ର ହୋଇଗଲା । ପ୍ରାୟ ସାଢ଼େ ବାରଟା ବେଳକୁ ବୋହୂ କହିଲା ଆମେ ସମସ୍ତେ ଏକାଠି ଖାଇବା । ଆମେ ସବୁ ବସିଲୁଁ । ମାଛ, ମାଂସ, ପାଞ୍ଚ ଛଅଟା ତରକାରୀ, ଭଜା, ଖିରୀ, ମିଠା, ଦହି କୋଉଥିରେ ଊଣା ନ ଥିଲା । ଯୋଉ ସ୍ତ୍ରୀଲୋକଟି ଆମ ଘରେ ଆସି ଠିକାରେ କାମ କରେ ସିଏ ପ୍ରକୃତରେ ରାନ୍ଧଣାରେ ଏକସ୍‌ପାର୍ଟ । ସବୁ ପ୍ରକାର ଡିସ୍ ସେ ତିଆରି କରିପାରେ । ତେବେ ସେଦିନ କିଛିଟା ଆମେ ବଜାରରୁ ଆଣିଥିଲୁଁ । ଏମିତିତ ପ୍ରାୟ ଆସେ ଭଲ ଭଲ ହୋଟେଲରୁ ।

ଖିଆ ଅଧା ହେଇଚି କି ନାହିଁ ହଠାତ୍ ସଂଜୁ କହିଲା, ଡାଡ଼ି, ମୋତେ ଆଜି ଆମ ହଷ୍ଟେଲରେ ଛାଡ଼ି ଦେଇ ଆସ ।

ଆମେ ସବୁ କାବା ହୋଇଗଲୁଁ। ବୋହୂରତ ଭାତ ଖିଆ ବନ୍ଦ ହୋଇଗଲା। ସେ ପଚାରିଲା ତୋର ପରା ସାତ ଦିନ ରହିବାର କଥା ?

ମୁଁ ସଂଜୁକୁ କହିଲି ତୋର ଖିଆପିଆ ମନ ମାନୁନି କି? ମାଙ୍କେ ତୋ ହଷ୍ଟେଲରେ କଅଣ ଯାଠୁ ଭଲ ପ୍ରିପାରେସନ ହୁଏ? ତା ବାପା ତାକୁ କହିଲେ ତୋ ପାଇଁତ ଆମେ ଅନେକ କିଛି ପ୍ରୋଗ୍ରାମ କରିଚୁଁ। ଯେମିତି, ଆଜି ଆମର ସମସ୍ତେ ମିଶି ରେଡ୍ ଫୋର୍ଟ, ଆପୁ ଘର ଇତ୍ୟାଦି ବୁଲି ଯିବାର ଅଛି। ଆମ ନୂଆ କାରରେ ତୁତ ମୋଟେ ବସିନୁ। ଆସନ୍ତା କାଲି ଆମେ ତୋ କେଙ୍କେକୁ ନେଇ ଜୟପୁର କିମ୍ବା ତୁ ଯଦି କହିବୁ ମାନାଲୀ ମଧ୍ୟ ଯିବା। ତୁ ଯେମିତି କହିବୁ। ଆମେ ସମସ୍ତେ ଏବେ ତୋ ଡିସ୍‌ପୋଜାଲରେ।

ମୁଁ କହିଲି ହଁ ସେଇଆ ନୁହେଁ ଆଉ କଅଣ? ତୁ ଖାଇ ସାରି ଟିକିଏ ବିଶ୍ରାମ ନେ। ତାପରେ ଆମେ ପ୍ରୋଗ୍ରାମ୍ ଫିକ୍ସ୍ କରିବା।

ସେ ମୁଣ୍ଡ ହଲାଇ ମନକଲା। କହିଲା, ଆଗ୍ରା, ମାନାଲୀ, ଜୟପୁର ଇତ୍ୟାଦି ଆମେ ଦୁଇ ମାସ ତଳେ ଯାଇଥିଲୁଁ। ଆମ କ୍ଲାସର ସମସ୍ତେ ଯାଇଥିଲେ। ବହୁତ ମଜାହେଲା। ଆପୁ ଘରଟା ବାଜେ। କିଛି ନାହିଁ ସେଠି। ଟିକିଏ ରହି ସେ ପୁଣି କହିଲା, ମୁଁ ଆଜି ଚାଲିଯିବି।

କିରେ କାହିଁକି? ଘାଘଡ଼ା ଗଳାରେ ତା ମାଆ ପଚାରିଲା। ବୁଲତା କିଳତ ପୂରା କରିନୁ। କଅଣ ତୋର ଦରକାର କହୁନୁ?

ମୋର କିଛି ଦରକାର ନାହିଁ ମାମି। ସବୁତ ଅଛି, କିନ୍ତୁ......

କଅଣ କିନ୍ତୁ? ଆମ ସମସ୍ତଙ୍କ ସ୍ୱର ଗୋଟିଏ ହୋଇଗଲା। ସେଇ ଗୋଟିଏ ଆବେଗ ଗୋଟିଏ ଉତ୍କଣ୍ଠା ଭିତରେ ଆମେ ସବୁ ଜଡ଼ସଡ଼ ହେଇଗଲୁଁ।

''ମୋର ସାଙ୍ଗ ସାଥି ଏଠି କେହି ନାହିଁ। ମୁଁ କାହା ସହିତ ଏଠି ଖେଳିବି? କାହା ସହିତ ପଦେ କଥା ହେବି? ପୁରୁଣା ସାଙ୍ଗମାନେ ବି ମୋ ସହିତ ମିଶୁ ନାହାନ୍ତି। ଅଲ ନନ୍ ସେନ୍‌ସ।''

ମୁଁ ସ୍ତବ୍ଧ ହେଇଗଲି। ପୁଅ ବୋହୂ ଦୁହେଁ ଯେମିତି ପଥର ପାଲଟି ଗଲେ। ମୋ ଦେହରେ ପ୍ରାଣ ନଥିଲା ବେଳେ ମୁଁ ଦେଖିଲି ବୋହୂ ଆଖିରେ ଜଳ ଜଳୁଜଳୁ ହେଉଚି। ଲୁଚେଇ କରି ପଣତ କାନିରେ ସେ ଆଖି ପୋଛି ପକେଇଲା।

ଆମକୁ ଅପେକ୍ଷା ନକରି ସଂଜୁ ଉଠି ପଡ଼ିଲା ହାତ ଧୋଇବାକୁ।



(ସମାବେଶ, ଜାନୁଆରୀ-ମାର୍ଚ୍ଚ, ୧୯୯୬)

# ଝରକା

ମୋ ବେଡ୍‌ରୁମର ଝରକାଟା ଖୋଲି ଦେଲା ମାତ୍ରେ ପ୍ରଥମେ ନଜରରେ ପଡ଼େ ତାଙ୍କ ଘରର ଡାଇନିଂ ରୁମ। ତାଙ୍କ ଡାଇନିଂ ଚେୟାର, ଟେବୁଲ, ଟେବୁଲ ଉପରେ ସୁନ୍ଦର ସୁନ୍ଦର ରଙ୍ଗର ଫୁଲ ସହିତ ଫୁଲଦାନୀ। ତା ପାଖକୁ ଲାଗିଥାଏ ସସ୍‌ର ବୋତଲ। ଜାମ୍, ବଟର ଏବଂ ଆଉ କିଛି ସୁନ୍ଦର ସୁନ୍ଦର କାଚ ଗ୍ଲାସ ଓ ପାଣି ବୋତଲ। ତାଙ୍କ କାନ୍ଥରେ ଝୁଲୁଥାଏ ମଡ଼ର୍ଣ୍ଣ ଆର୍ଟ କେତୋଟି। ସେଥିରୁ ଗୋଟାଙ୍କର ପୂରା ଅଂଶ ଦେଖା ଯାଏନି। ତାଙ୍କ ଝରକାର କାଚ ଅତି ସ୍ୱଚ୍ଛ। ପରଦା ପଡ଼ି ନଥିଲେ ସବୁ ଦେଖାଯାଏ।

ଏବେ ମୁଁ ମୋର ନିଜ କଥା କହିବି। ମୁଁ ଚନ୍ଦ୍ର ରାୟ। ବୟସ ତେତିଶ। ବିବାହ କରିନି ଅର୍ଥାତ୍ କରିବାକୁ ସୁଯୋଗ ପାଇନି। ତେବେ ସୁଯୋଗ ଯେ ମୋତେ ଆସିନି ସେ କଥା ନୁହେଁ। ବେଳେ ବେଳେ ପ୍ରସ୍ତାବ ଆସିଚି ଏବଂ ମନକୁ ମନ ଲେଉଟି ଯାଇଚି। ଆଉ କେତେବେଳେ 'ମୁଁ କହିବି' କହି ସମୟ ଟାଣି ଦେଇଚି। ଏସବୁ କେବଳ ଏଇଥିପାଇଁ ଯେ ମୋର ଚାକିରି କିଛି ନାହିଁ କହିଲେ ଚଳେ। ଅର୍ଥାତ୍ ସବୁବେଳେ ପ୍ରଥମ ଶ୍ରେଣୀରେ ପାଶ୍ କରି ପି.ଏଚ୍.ଡ଼ି କଲା ପରେ ମଧ୍ୟ ଦୀର୍ଘ ପାଞ୍ଚ ବର୍ଷ କାଳ ଯେତେବେଳେ ଚାକିରିଟିଏ ନ ମିଳିଲା ସେତେବେଳେ ବିଧବା ମାଆର ସଯତ୍ନ ସଞ୍ଚିତ ଗହଣାତକ ଯାହାକୁ ସେ ଭଉଣୀ ବାହାଘର ପାଇଁ ରଖିଥିଲା, ତାକୁ ବନ୍ଧା ପକେଇ ସେଇ ଟଙ୍କାକୁ ଡୋନେସନ ଦେଇ ଗୋଟିଏ ପ୍ରାଇଭେଟ କଲେଜରେ ଏବେ ଅଧ୍ୟାପକ ଚାକିରିଟିଏ ପାଇଚି। ଦରମା ତିନି ମାସରେ ମିଳେ। ସ୍ଥାୟୀ ହେବାକୁ ଦଶବର୍ଷ ଖଣ୍ଡେ ଲାଗିଯିବ ବୋଲି କହୁଚନ୍ତି। ସେଇ ଆଶାରେ ମୁଁ ବସିଛି। ହୋଟେଲରେ ଖାଉଚି। ହୋଟେଲବାଲା ବାରମ୍ବାର ତାଗିଦ୍ କରେ। ମିଲ୍ ବନ୍ଦ କରି ଦେବ କହେ। ଭଡ଼ା ଘରେ ରହୁଚି। ମାଲିକ ମଧ୍ୟ ବାରମ୍ବାର ଆସେ। ତେବେ ସେମିତି ବ୍ୟସ୍ତ କରେନା। ଭଲ ଲୋକଟାଏ। ଗାଁରେ ମାଆ ଓ ଖୁବ୍ ଶୀଘ୍ର ବାହା ହେବାକୁ ଅପେକ୍ଷା କରିଥିବା ସାନ ଭଉଣୀ।

ମୁଁ ଝରକା ଖୋଲି ଦେଇ। ମୋ ଝରକାରେ ପରଦା ନ ଥାଏ କି କାଚ ନ ଥାଏ। ତେଣୁ ମୁଁ ଝରକା ଖୋଲେଁ। ଖୋଲିବାକୁ ବାଧ୍ୟ। ବାହାରର ଥଣ୍ଡା ପବନ ଟିକିଏ ପାଇବାକୁ ହେଲେ ଉଠନ୍ତା ସୂର୍ଯ୍ୟ କିରଣରୁ ଚିମୁଟାଏ ଦେହରେ ନେସିବାକୁ ହେଲେ ମୁଁ ଝରକା ଖୋଲିବାକୁ ବାଧ୍ୟ। ଆଉ ଝରକା ନ ଖୋଲିଲେ ? ନ ଖୋଲିଲେ ନିବୁଜ କାରାଗାର। କିଟିମିଟି ଅନ୍ଧାର ଏବଂ ରୁନ୍ଧି ହେଇ ଯାଇଥିବା ବାଷ୍ପ ହିଁ ହୁଏ ଜୀବନର ସାଥୀ।

ମୁଁ ଝରକା ଖୋଲି ଦେଲା ମାତ୍ରେ ସେ ପାଖ ଝରକାର ଦୁଧ ଫେଣର ମୁଲାୟମ ପରଦାଟିକୁ ଆସ୍ତେ ଆସ୍ତେ ଗୋଟାଏ ଆଉଟା ସୁନାର ହାତ ଟାଣି ନେଇଯାଏ ଗୋଟାଏ ପାଖକୁ ଏବଂ ତାପରେ ହାତ ସାଥିରେ ପରଦା ପାଖକୁ ଲାଗି ଆଖି ପହଁରିଯାଏ ମୋ ଉପରେ। ଗୋଟାଏ ମୁହୂର୍ତ୍ତର ସତର୍କ ସନ୍ତରଣ ଭିତରେ ମୁଁ ଜଡ଼ସଡ଼ ହେଇଯାଏଁ। ଝାଳରେ ଗୁମ୍‌ସୁମ୍ ହେଇଯାଏ। କେମିତି କଅଣ ଓ କାହିଁକିର ଅସୁମାରୀ ପ୍ରଶ୍ନର ଜାଲ ଭିତରେ ମୁଁ ଅସହାୟ ଭାବେ ଧରାପଡ଼ି ଯାଇଥିବା ଦୁର୍ବଳ ମାଛଟିଏ ପରି କାଲେଇ ପଡ଼େଁ।

ନିମିଷକ ଭିତରେ ମୁଁ ପୁଣି ନିଜକୁ ସଜାଡ଼ି ନିଏଁ। ବାଘ ମୁହଁରୁ ଖସି ଆସିଥିବା ଘାଏଲ ଶିକାର ପରି ସନ୍ତର୍ପଣରେ ମୁହଁ ଫେରେଇ ନେଇ ଘର କଣକୁ ଯାଇ ସୁରେଇରୁ ପାଣି ଆଣି ପିଏଁ। ପେଟପୂରା ପାଣି ପିଇ ସାରିଲା ପରେ ପକେଟରେ ହାତ ମାରେ। ନା, ଥାଉ ଚା' ନ ପିଇଲେ ମଧ୍ୟ ଚଳିବ। ପାଞ୍ଚଟା ବେଳେ କଲେଜ ଫେରନ୍ତା ଚା' କପେ— ମୋ ପାଇଁ ପରିଶ୍ରମ ଜନିତ କ୍ଲାନ୍ତି ଅପନୋଦନର ଆମୋଦ ନୁହେଁ— ଏକ ନ୍ୟୂନତମ ଆବଶ୍ୟକତା।

ମୁଁ ବିଛଣାରେ ଶୋଇ ପଡ଼େଁ। ଶୋଇପଡ଼େଁ ଛାତକୁ ଚାହିଁ। ଖୋଲା ଝରକା ଦେଇ ଆକାଶକୁ ଚାହିଁ। ଶ୍ରାବଣର ମେଘ, ଅଶିଣର ଜହ୍ନ, ବସନ୍ତର ରାସୋତ୍ସବ ଏମାନେ ମୋତେ ଚାହିଁ ଆଖି ମିଟିକା ମାରନ୍ତି। ଏମାନଙ୍କୁ ଦେଖି କାନ ଥରା ଶୀତରେ ବି ମୋ ଭିତରେ ବୈଶାଖର ଝଡ଼ ଉଠେ। ଊର୍ଦ୍ଧ୍ୱଶ୍ୱାସ ହେଇ ମୁଁ ବିଛଣାରେ ଛଟପଟ ହୁଏଁ।

ମା ଚିଠି ଦେଇଚି। ପୋଷ୍ଟକାର୍ଡ଼ଟିଏ, ଖୋଲା ଚିଠି। ଲେଖିଚି— କେବେ ଆସୁଚୁ? ପୂଜାର ଦୁଇ ଚାରି ଦିନ ପୂର୍ବରୁ ଆସିବୁ। ଅନେକ କଥା ତ ଲେଖିବାର ଅଛି। କିନ୍ତୁ ଲେଖିଲେ କଅଣ ହେବ? ତୁ ବା କଅଣ କରି ପାରିବୁ? ତଥାପି ପୂଜାକୁ ନିଶ୍ଚୟ ଆସିବୁ। ଗାଁରେ ସମସ୍ତେ ଆସୁଚନ୍ତି। ତୁ ଆସିବୁନି? ମିନିତ ତୋ ଆସିବାକୁ ଅପେକ୍ଷା କରି ବସିଚି। ସେଥର ଗଲାବେଳେ ତେତୋ କଅଣ କହିଥିଲା ପରା? ମୋତେ ଖାଲି ମନେ ପକେଇ ଦେବାକୁ କହୁଚି। ବାପାଙ୍କ ପରା, ମୁଁ ତ ତୋତେ କିଛି ଆଣିବାକୁ କହୁନି। ତେଣୁ ତୁ ନିଶ୍ଚୟ ଆସିବୁ।

ଝରକା ସେ ପଟୁ ପାଟି ଶୁଭିଲା, "ଏୟ, କଅଣ କରୁଚୁ? ଗଲୁ ବଗିଚାରୁ ଫୁଲ ଆଣିବୁ।" ସେଇ ପରିଚିତ ସ୍ୱର।

ମୁଁ ଚମକି ପଡ଼େଁ। ବଡ଼ କଅଁଳିଆ ମିଠା ସ୍ୱର। ଏମିତି ବେଳେବେଳେ ଶୁଣାଯାଏ। ଆବଶ୍ୟକ ଥାଉ କି ନ ଥାଉ। ସ୍ୱରଟା ମୋ ଝରକା ରେଲିଂ ଡେଇଁ କୋଠରି ଭିତରକୁ ପଶି ଆସେ, ବେଳ ଅବେଳରେ ଗେଟ୍ ଖୋଲା ଥିଲେ ଇନ୍‌ର କଅଁଳ ଘାସ ଦେଖି ବୁଲା ଗାଈ କୁଦା ମାରି ଭିତରକୁ ପଶି ଆସିଲା ପରି।

ଚିଠିଟାକୁ ସେମିତି ହାତରେ ଧରି ମୁଁ ବିଛଣାରୁ ଉଠି ପଡ଼େଁ। ଝରକା ପାଖକୁ ଆସିଲା ବେଳକୁ ଏବେ ଏବେ ଅଙ୍କା ଯାଇଥିବା ଛବିଟିଏ ଧୀରେ ଧୀରେ ପରଦା ପାଖରେ ଆତ୍ମଗୋପନ କରେ। ପତଳା ପରଦାରେ ଆଙ୍ଗୁଳି ଏବେ ବି ଅଟକି ରହିଚି। ଚମ୍ପାକଢ଼ିର ଚାରିଟା ଆଙ୍ଗୁଳି। ବେଶି ସରୁ ନୁହେଁ କି ମୋଟା ନୁହେଁ। ନଖରେ ମେରୁନ୍ ରଙ୍ଗର ପଲିସ। ବେଶ ସ୍ୱଚ୍ଛ ଓ ପରିଷ୍କାର।

ବୁଡ଼ି ଯାଉଥିବା ସୂର୍ଯ୍ୟଟା ଘରର ଛାତ ଉପରେ ଅଟକି ଯାଇଚି। ମୁହଁ ଶେତା ପଡ଼ି ଯାଇଚି। ଅନେକ ଦିନର ମାଲେରିଆ ରୋଗୀ ପରି।

ମୋ ହାତରେ ମୋ ମାଆର ଚିଠି। ଝରକା ସେ ପଟେ ଚାରିଟା ଆଙ୍ଗୁଳି ସେମିତି ଅଟକି ରହିଚି। ପରଦାର ଢେଉ ଢେଉକା ଭାଙ୍ଗ ଭିତରେ ଛବିଟା ଠିଆ ହେଇ ରହିଚି। ମଣିଷର ଛାଇ। ଦେଖି ହୁଏନି ମଣିଷକୁ। ଛବିଟା ତାର ଅବସ୍ଥିତି ଜଣେଇ ଦଉଚି ମାତ୍ର। ଦୁଇଟା ଆଖିରେ ସମର୍ପଣର ଭଙ୍ଗୀ। କିନ୍ତୁ ଭାଷା ପଢ଼ି ହୁଏନି। ସବୁ ଅସ୍ୱଚ୍ଛ। ସବୁ ଅବୁଝା।

ମୋ ହାତରେ ଚିଠି। ମୁଁ ବିଛଣାକୁ ଫେରି ଆସିଲି। ମୋ ଝରକା ସେମିତି ଖୋଲାଥାଏ। ଚିଠିରେ ମାଆର ମୁହଁ। ମୋ ଭଉଣୀର ଛବି। ଛବି କଥା କହୁଚି। ମାଆକୁ ଲୁଚେଇ କହୁଚି, ''ମୋର ଶାଢ଼ୀ ନାହିଁ। ପୂଜାକୁ ଆଣିବ, ସମସ୍ତେ ଏଠି ପିନ୍ଧିବେ। ମୋ ପାଇଁ ସାଧାରଣ ଶାଢ଼ୀଟିଏ ହେଲେ ଦି' ଆଡ଼କୁ ପାଇବ। ମୁଁ ଚଳେଇ ନେବି।'' ଟିକିଏ ରହି ସେ ପୁଣି କହିଲା, ଟିକିଏ ନରମ ଗଳାରେ, ''ଯଦି ତୁମର ପଇସା ହୁଏ, ନ ହେଲେ ବି ଚିନ୍ତା ନାହିଁ।'' ତା ଓଠରେ ଟେନାଏ ମଇଳା ହସ।

ମୁଁ ବିଛଣାରୁ ଉଠି ପଡ଼ିଲି। ପୁଣି ଥରେ ଝରକା ପାଖକୁ ଗଲି। ସେଠାକୁ ଯିବାକୁ ମୋର ଦରକାର ଥିଲା କି ନା କେଜାଣି। ଆବଶ୍ୟକ ଥାଏ କି ନ ଥାଏ ସେଇଟା ଅଲଗା କଥା। ବେଳେ ବେଳେ ଆବଶ୍ୟକତା ଓ ଅନାବଶ୍ୟକତା ଦୁହେଁ ନିଜ ଭିତରେ ସାଲିସ କରି ନିଅନ୍ତି। ତେଣୁ ମଣିଷ ଦ୍ୱନ୍ଦରେ ପଡ଼ିଯାଏ।

ସମ୍ପୂର୍ଣ୍ଣ ଛବିଟା ପୁଣି ଥରେ ପରଦା ପଛପଟକୁ ଚାଲିଗଲା। ଏଥର ଯିବା ପୂର୍ବରୁ କିଛି ମେସେଜ ଛାଡ଼ି ଦେଇଗଲା। କଅଣ ସେ ମେସେଜ। କୁହା ହେଇ ନ ଥିବା ଭାଷାରେ ମଧ୍ୟ ଅନେକ କଥା ଥାଏ। ଅନେକ କଥାର ମେସେଜ ଗୋଟିଏ ଶବ୍ଦରେ ବି ଥାଏ। ବିଦ୍ୟୁତର ତରଙ୍ଗ ହିଁ କେବଳ ଶବ୍ଦର ତରଙ୍ଗକୁ ବୋହି ନେଇ ପାରେ। ତିନିମାସର ଦରମା ମିଳି ନଥିବା ଅଧ୍ୟାପକ ଚନ୍ଦ୍ର ରାୟ ଦିହରୁ ତରଙ୍ଗ ଓ ଶବ୍ଦକୁ ଶୋଷି ନେଇଥିଲେ ତା ମାଆର ଭାଷା ଓ ଭଉଣୀର ଆଶା ଓ ଆକାଂକ୍ଷାମାନେ।

ମୋର ମନେ ପଡ଼ିଲା ଦୁର୍ଗୋତ୍ସବର ଗାଁ। ସାଙ୍ଗ ସାଥୀ। ପିଲାକାଳ। ନଈବାଲି। ନଈ ସେ ପାରିରେ ଅଶିଣର ଖଣ୍ଡ ଖଣ୍ଡିଆ ମେଘ ଦିଗ୍‌ବଳୟ ଦେହରେ ଝୁଲି ପଡ଼େ ଗୋଟାଏ ମୋଟା ହାତୀର ଶୁଣ୍ଢପରି। ବାଲିଘର ତୋଳୁ ତୋଳୁ ସାଙ୍ଗଟାଏ ସେଦିନ ପାଟି କରି ଉଠିଥିଲା, ''ହେଇ ଦେଖ, ଐରାବତ ପାଣି ପିଉଚି ସମୁଦ୍ରରୁ।''

"ଐରାବତ ସମୁଦ୍ରରୁ ପାଣି ପିଉଚି ?"

"ଆଉ କୋଉଠୁ ପିଅନ୍ତା ? ନଇରୁ ପିଇଲେ ତ ଥରକେ ସରିଯିବ।" ସେ ହୋ ହୋ ହେଇ ହସି ଉଠିଲା।

ମୁଁ ସେଦିନ ତା କଥାରେ କେତେ ଯୁକ୍ତି ଅଛି କି ନା ସେ କଥା ଚିନ୍ତା ନ କରି ହସି ଦେଇଥିଲି।

ସେପଟ ଝରକାରେ ପରଦାରୁ ଚମ୍ପାକଢ଼ିର ଆକୃତିଗୁଡ଼ିକ କେବେଠାରୁ ଲିଭି ଗଲାଣି।

ମୁଁ ଫେରି ଆସିଲି ବିଛଣାକୁ। ଏ ଘରେ ମୋର ଏକମାତ୍ର ସଙ୍ଗୀପାଖକୁ। ଶୋଇପଡ଼ି କାନ୍ଥକୁ ଅନେଇଲି। କୋଉ ଦିନରୁ କୋଣାର୍କର ନର୍ତ୍ତକୀକୁ ନେଇ କ୍ୟାଲେଣ୍ଡରର ପୃଷ୍ଠାଟିଏ ମୋ ଆଗରେ ଝୁଲି ରହିଚି। ଯୁଗ ଯୁଗର କ୍ଷୁଧା ନେଇ ନର୍ତ୍ତକୀଟି ସେମିତି ଅନେଇ ରହିଚି କୋଉ ଏକ ଅଦୃଶ୍ୟ ଇଙ୍ଗିତକୁ ଅପେକ୍ଷା କରି। ଆଖିରେ ତାର ଅଜସ୍ର ଆବେଦନ। ପର୍ଯ୍ୟାପ୍ତ ନିମନ୍ତ୍ରଣ।

ଆସନ୍ତା କାଲିର ତାରିଖ ଉପରେ ମୋ ଆଖି ଅଟକି ଗଲା। ୨୭ ଅକ୍ଟୋବର, ମୋର ଜନ୍ମଦିନ। ଏଥର ତେତିଶ ଟପି ଚଉତିରିଶ ଆରମ୍ଭ ହେବ। ବର୍ଷ ପରେ ବର୍ଷ ଗଡ଼ି ଯାଉଚି। ସେ ଅପେକ୍ଷା କରେନା। ତାକୁ ଡର କାହିଁ ଅପେକ୍ଷା କରିବାକୁ ? ତମେ ମାସକର ଦରମା ତିନି ମାସରେ ପାଇଲେ ତାର କିଛି ଯାଏ ଆସେନା। ତାର ଗତି ପଥ ଆଜି ଯେମିତି, ହଜାରେ ବର୍ଷ ପୂର୍ବରୁ ବି ସେମିତି ଥିଲା। ବରାବର ସେମିତି ରହିଥିବ।

ମୁଁ ଗଣିଦେଲି। ମାସ ସରିବାକୁ ଆହୁରି ପାଞ୍ଚଦିନ ବାକି ଅଛି। କଲେଜରେ ଛୁଟି ପଡ଼ିବାକୁ ଆଉ ଦୁଇଦିନ ବାକି ଅଛି। ପୂଜା ଆରମ୍ଭ ହେବାକୁ ଆଉ ଚାରିଦିନ ବାକି ଅଛି। କିନ୍ତୁ ଦରମା ମିଳିବାକୁ ? ତାର ଉତ୍ତର କ୍ୟାଲେଣ୍ଡରରୁ ମିଳିବ ନି। ପ୍ରିନ୍ସିପାଲ ଆଜି କହିଲେ, "ପୂଜା ପାଇଁ ସମସ୍ତଙ୍କୁ କିଛି କିଛି ଦିଆଯିବ।"

"କିଛି ମାନେ ?" ଆମ ଭିତରୁ ଜଣେ ପଚାରିଲେ।

"କିଛି ମାନେ ଘରକୁ ଯିବା ଆସିବା ଖର୍ଚ୍ଚ।" ସେ ହସି ହସି କହିଲେ, ପୂଜା ସେଲିବ୍ରେସନ୍ ପାଇଁ ଏଇ 'କିଛି'ଟା କମ କଥା ନୁହେଁ।

ସେ ଯେତିକି ହସୁ ଥାଆନ୍ତି ମୋ ଭିତରଟା ସେତିକି କୋରି ହେଇ ଆସୁଥାଏ। ସେ ସ୍ଥାନଟା ତାଙ୍କ ଅଫିସ ହେଇ ନ ଥିଲେ ମୁଁ ହୁଏତ କାନ୍ଦି ପକେଇ ଥାଆନ୍ତି, ହେ ଭଗବାନ ! ଅଧ୍ୟାପକ ଚନ୍ଦ୍ର ରାୟ ତମ ସୃଷ୍ଟି ସର୍ଜନାର ଏକ ଅଭିଶାପ। ତମେ ଯଦି ତାକୁ ଫୁଟ୍‌ପାଥ୍‌ର ଜୀବଟିଏ କରି ଥାଆନ୍ତ ତେବେ ସେ ହୁଏତ କିଛି ନ ହେଲେ ବି ଭିକ ମାଗି ପେଟପୋଷି ପାରୁ ଥାଆନ୍ତା। ତୁମେ ଯଦି ତାକୁ ସାଧାରଣ ଶିକ୍ଷାଦୀକ୍ଷାର ଚତୁର ମଣିଷଟିଏ କରି ଥାଆନ୍ତ ତେବେ ସେ କିଛି ନ ହେଲେ ରାଜନୀତି କରି ସାମ୍ରାଜ୍ୟ ଶାସନ କରି ପାରୁଥାଆନ୍ତା। କିନ୍ତୁ ଏ ସବୁ ନକରି ତମେ ତାକୁ ଏ ଜ୍ଞାନ ଗାରିମା ଦେଇ କାହିଁକି ?

ଆଉ ମୁଁ ନିରୀହ ଅଧ୍ୟାପକଟିଏ ନ ହୋଇ ଯଦି ଉଦ୍‌ଭ୍ରାନ୍ତ ଯୁବକଟିଏ ହୋଇଥାଆନ୍ତି ତେବେ ହୁଏତ ସେତେବେଳେ ପ୍ରିନ୍‌ସିପାଲଙ୍କ କହୁଥିବା ମୁହଁର ଥୋମଣି ଭାଙ୍ଗି ଦେଇ ତାଙ୍କ ଛାମୁଦାନ୍ତ ଦି'ଟାକୁ ଉଡ଼େଇ ଦେଇ ଥାଆନ୍ତି।

କିନ୍ତୁ ମୁଁ ସେ ସବୁ କିଛି କରି ପାରିଲିନି। ମୁଁ ଖାଲି ନିର୍ବାକ ନିସ୍ପନ୍ଦ ହୋଇ ତାଙ୍କୁ ଅନେଇ ରହିଲି। ସେ ହସ ହସ ମୁହଁରେ ରୁମରୁ ବାହାରି ଯାଇ କାରରେ ବସିବା ପର୍ଯ୍ୟନ୍ତ। ଦୁଃଖ, କ୍ରୋଧ ଓ ଅସହାୟତାର ଗୋଟାଏ ବିରାଟ ଉଦ୍‌ଗୀରଣକୁ ମୁଁ ଅନେକ କଷ୍ଟରେ ଛାତି ଭିତରେ ଚାପି ନେଇଥିଲି।

ମୁଁ ତକିଆ ଉଠେଇ ତା ତଳକୁ ଦେଖୁଥିଲି। ନା, ବେଳ ଅବେଳରେ ମୁଁ ଚାରଣି, ଆଠଣିଟେ ସେଇଠି ପକେଇ ଦେଇଥାଏ। ଆଜି ସେ ଜାଗା ମଧ୍ୟ ଏକଦମ୍ ଖାଲି। ମୋର ପୁଣି ନଜର ପଡ଼ିଲା ୨୭ ତାରିଖ ଉପରେ। ତାରିଖଟା ମୋତେ ଯେମିତି ଖତେଇ ହେଉଚି। କହୁଚି, ହେଇ ଦେଖ୍ ମୁଁ ଆସ୍ତେ ଅସ୍ତେ କେମିତି ଖସି ଖସି ଚାଲି ଯାଉଚି। ତୁ ମୋତେ ଧରି ରଖି ପାରିବୁ ?

ସଞ୍ଜ ହୋଇ ସାରିଲାଣି। ମୁଁ ବିଛଣାରୁ ଉଠି ପଡ଼ିଲି। ଝରକା ସେ ପାଖର ଆଲୁଅ ଜଳି ଉଠିଲାଣି। କିନ୍ତୁ ଝରକା ବନ୍ଦ ଅଛି। ଘର ଭିତରେ କିଏ କଅଣ କରୁଚି ସେ କଥା ଆଉ ଦେଖା ଯାଉନି। ମୁଁ ବୋଉର ଚିଠି, ଭଉଣୀର କଥା, ଝରକା ସେ ପାଖର ଆଖି ଏବଂ ସର୍ବୋପରି ପ୍ରିନ୍‌ସପାଲଙ୍କ ହସରୁ ନିଜକୁ ଆଡ଼େଇ ନେବାକୁ ଠିଆ ହେଲି। ଲୁଙ୍ଗି ପିନ୍ଧିଥିଲେ ମଧ୍ୟ ପଞ୍ଜାବିଟେ ଦେହରେ ଗଳେଇ ପକେଇଲି। ବାହାରକୁ ଆସିଲି। ରାସ୍ତା ଡେଇଁଲେ ଚା' ଦୋକାନ। କିନ୍ତୁ ସେ ଆଉ ଚା' ଦେବ ନାହିଁ। ଦୁଇ ମାସ ହେଲା ପଇସା ଦେଇନି ବୋଲି ସେ ମୁହଁ ଖୋଲି ମନା କରି ଦେବା ପୂର୍ବରୁ ମୁଁ ତା ଦୋକାନ ଦେଇ ଆଉ ଯିବାକୁ ସାହସ କରୁନି। ତେଣୁ ଚା' ଟିକିଏ ପିଇବାକୁ ଦେଲେ ମୋତେ ଛକ ପାର ହୋଇ ଆଉ ଖଣ୍ଡେ ବାଟ ଯିବାକୁ ହେବ। ଯୋଉ ହୋଟେଲରେ ମୁଁ ଭାତ ଖାଏଁ। ସେ ଯାଏ ମୋତେ ଯିବାକୁ ହେବ। ଆଜି ସେ ନିଶ୍ଚୟ ପଇସା ମାଗିବ। ସେ ଜାଣେ, କାଲି କଲେଜରେ ଛୁଟି ପଡ଼ିଯିବ। ଆମେ ସବୁ ଘରକୁ ଚାଲିଯିବୁଁ।

ତଥାପି ମୁଁ ସେଇ ଆଡ଼କୁ ଚାଲିଥାଏଁ। ସେ ଚା' କପେ ଦେବ କିନ୍ତୁ ଅନେକ କୁନ୍ଥେଇଲା ପରେ। ଅନ୍ତତଃ ପକ୍ଷେ ପନ୍ଦର କୋଡ଼ିଏ ଜଣଙ୍କୁ ଚା' ଦେଇ ସାରିଲା ପରେ ମୁହଁ ତଳକୁ କରି ସେଇ ସମସ୍ତଙ୍କ ସାମନାରେ ପଚାରିବ ଏ ମାସରେ ମିଳିବତ ? ତାପରେ ମୋ'ଠୁ ଉତ୍ତର ଶୁଣି ସାରିଲା ପରେ ହୁଏତ କହିବ ଆଉ କେତେ ଦିନ ବା ଜଣେ ଏମିତି ଚଳେଇ ନେଇ ପାରିବ ?

ଏସବୁ ଅନିବାର୍ଯ୍ୟ କଥୋପକଥନ ସହିତ ଅଭ୍ୟସ୍ତ ଥିବାରୁ ମୁଁ ସେ ହୋଟେଲକୁ ଯିବା ବନ୍ଦକରି ନ ଥାଏଁ। ସେ କହେ, ମୁଁ ଶୁଣେଁ ଏବଂ ପୁଣି ଚାଲି ଆସେଁ।

କାହିଁକି କେଜାଣି ମୋର ଆଉ ହୋଟେଲ ଆଡ଼କୁ ଯିବାକୁ ଇଚ୍ଛା ହେଲାନି। ବୋଧେ ଏଥିପାଇଁ ଯେ ଏଇନେ ତା ହୋଟେଲରେ ଅନେକ ଅଫିସ ଫେରନ୍ତା ଚା ପିଉଥିବେ। ସେଠି ଏସବୁ କଥାର ପୁନରାବୃତ୍ତି ଅପେକ୍ଷା ରାତିରେ ଖାଇଲାବେଳେ ନିରୋଳାରେ ବରଂ ଭଲ ହେବ।

ମୁଁ ଘରକୁ ଫେରି ଆସିଲି। କବାଟ ଖୋଲି ଭିତରକୁ ପଶିଲି ଏବଂ ଲାଇଟ ଜଳେଇ ଝରକା ଖୋଲି ଦେଲି।

ପୁଣି ସେଇ ମୁହଁ ପବନରେ ଭାସି ଉଠିଲା। ପୁଣି ସେ ଚମ୍ପାକଢ଼ିର ଆଙ୍ଗୁଳି। ପୂର୍ଣ୍ଣାୟବର ଚିତ୍ରଟିଏ ଯେମିତି ଅନେକ ବେଳୁ ଅପେକ୍ଷା କରି ଠିଆ ହେଇଚି। ସେ ଆଖିରେ କହୁଚି କୁଆଡ଼େ ଯାଇଥିଲ ସଞ୍ଜବେଳଟାରେ? ମୁଁ ଅନେକ ବେଳୁ ତୁମକୁ ଖୋଜୁଚି। ଆମ ଛାତ ଉପରେ ଦେଖୁନ କେମିତି ଜହ୍ନ ଉଠିଚି। ଜହ୍ନର ଫୁଲଗୁଡ଼ା କେମିତି ଆମ ବଗିଚାରେ କୁଢ଼େଇ ହେଇ ପଡ଼ିଚି। ଆସ, ତୁମେ ସେ ବଗିଚାକୁ ଆସ। ଆମେ ସେଠି ବସିବା, ଜହ୍ନ ସାଥୀରେ, ଭସା ମେଘ ସାଥୀରେ ଲୁଚକାଳି ଖେଳିବା। ସାରା ରାତି ଆମେ ସେଇଠି ଲନ୍ ଉପରେ କଟେଇ ଦେବା। ଆସ, ଏଠି ଆଉ କିଏ ଅଛି?

ମୁଁ ଚମକି ପଡ଼ିଲି। ମୋ ଭିତରେ ଗୋଟାଏ ଅପୂର୍ବ ଶିହରଣ ମୋର ସର୍ବାଙ୍ଗକୁ ଉଲ୍ଲସିତ କରି ପକେଇଲା। ଗୋଟାଏ ନୂତନ ଆମେଜ ମୋତେ ଆବୋରି ପକେଇଲା। ମୁଁ ଝରକା ଆଡୁ ମୁହଁ ଫେରେଇ ଆଣି କାନ୍ଥରେ ଟଙ୍ଗା ହେଇଥିବା ଛୋଟ ଦର୍ପଣ ସାମନାରେ ଠିଆ ହୋଇ ନିଜକୁ ଦେଖିଲି। ଦର୍ପଣର ପାଖାପାଖି ସ୍ଥାନରେ କ୍ୟାଲେଣ୍ଡରଟି ଝୁଲୁ ଥିବାରୁ ମୋର ପୁଣି ଥରେ ୨୭ ତାରିଖ ଉପରେ ନଜର ପଡ଼ିଲା। ୩୪ର ସଂଖ୍ୟା କଥା ମନେ ପଡ଼ିଯିବାରୁ ମୋ ଭିତରେ ଗୋଟିଏ ଅହେତୁକ ଅସହାୟତାର ଊର୍ଦ୍ଧଶ୍ୱାସ ମୋତେ ଅସ୍ତବ୍ୟସ୍ତ କରି ପକେଇଲା। ମୋତେ ଲାଗିଲା ମୋ ହୃତପିଣ୍ଡର ଗତି ହଠାତ୍ ଯେମିତି ବଢ଼ି ଯାଉଚି। ଅନେକ ରାସ୍ତା ଦୌଡ଼ି ଆସିଲେ ଯେମିତି ଲାଗେ। ହାଲିଆ ଲାଗେ। ଧଇଁ ସଇଁ ହେଇ ଥକି ପଡ଼େ।

ବିଛଣା ଉପରେ ମୋ ମାଆର ଚିଠିଟା ସେମିତି ପଡ଼ିଥିଲା। ମୁଁ ତାକୁ ଉଠେଇ ନେଲି। କିଛି ପଢ଼ି ପାରୁ ନ ଥିବା ଆଖିରେ ଚିଠିଟିକୁ ମୁଁ ଦେଖୁଥିଲି। ସେ ଅକ୍ଷର ଗୁଡ଼ାକ ମୋ ସାମ୍‌ନାରେ ଯେମିତି ଆଗ ଅପେକ୍ଷା ଆହୁରି ବଡ଼ ଦେଖା ଯାଉଥିଲେ। ପୋଷ୍ଟକାର୍ଡ଼ଟା ଯେମିତି ଅନେକ ଲମ୍ବା ହେଇ ଯାଇଥିଲା। ଏଥର ଚିଠିଟାକୁ ମୁଁ ଡାଏରୀ ଭିତରେ ସେଇ ୨୭ ତାରିଖ ଜାଗାରେ ରଖିଲି। ତା'ପରେ ଧୀରେ ଧୀରେ ଝରକା ପାଖକୁ ଯାଇ ଅତି ସନ୍ତର୍ପଣରେ ଦୁଇ ହାତରେ ଝରକାଟିକୁ ଟାଣି ଆଣି ବନ୍ଦ କରି ଦେଲି ଏବଂ ତା ପରେ ଆଲୁଅ ଲିଭେଇ ଆଖିବୁଜି ଶୋଇ ପଡ଼ିଲି।



(ଜଗ... ନୂଆଗା, ୧୯୯୬)

# ଡାଉନ୍ ଟ୍ରେନ

ରାଜଧାନୀରେ ପ୍ରାଦେଶିକ ସ୍ତରରେ ସେ ଦିନ ଯୋଉ ସଦ୍‌ଭାବନା ରାଲିର ଆୟୋଜନ କରା ଯାଇଥିଲା ତାହା ଯେ ଅଭୂତପୂର୍ବ ସଫଳତା ହାସଲ କରିବ ଏ କଥା ଆମେ ମୋଟେ ଚିନ୍ତା ମଧ୍ୟ କରି ନଥିଲୁଁ। ଦୀର୍ଘ ଚାରି ମାଇଲ ଲମ୍ବ ଏବଂ କୋଡ଼ିଏ ଫୁଟ ଚଉଡ଼ାର ସେ ଜନ ସ୍ରୋତ ଯେତେବେଳେ ଜନପଥ ଉପରେ ବଂକେଇ ବଂକେଇ ଆଗକୁ ଯାଉଥାଏ ସେତେବେଳେ ଯେ କେହି ଦେଖିଲେ କହିବ ଯେ ଏହା ନିଶ୍ଚୟ ଗୋଟିଏ ନୂତନ ଜାଗରଣ। ସଦ୍‌ଭାବନା ରାଲି ଆୟୋଜନ ପଛରେ ଆମର ସେ ଦିନ ସେମିତି କିଛି ରାଜନୈତିକ ଉଦ୍ଦେଶ୍ୟ ନ ଥିଲା। ସେଇଟା ଥିଲା କେବଳ ଗୋଟାଏ ଏଓ୍ୱାରନେସ୍ କ୍ରିଏଟ୍ କରିବାର ଇଚ୍ଛା। କିନ୍ତୁ କିପରି ଓ କାହିଁକି ଏମିତି ସ୍ୱତଃସ୍ଫୂର୍ତ୍ତ ଭାବରେ ସେ ଦିନ ଏତେ ଲୋକ ଯୋଗ ଦେଲେ ସେ କଥା ଆମ ନେତାମାନେ ଚିନ୍ତା କରି ପାରି ନଥିଲେ। ତେବେ ମୋଟା ମୋଟି ଭାବେ ଏହା ଦ୍ୱାରା ଆମ ଦଳର ତଥା ନେତାଙ୍କର ଯେ ଲୋକପ୍ରିୟତା ବଢ଼ିଛି ଏଥିରେ ଆଉ ସନ୍ଦେହର ଅବକାଶ ନଥିଲା।

ମୁଖ୍ୟମନ୍ତ୍ରୀ ଅବଶ୍ୟ ତାଙ୍କ ଭାଷଣରେ ଏ କଥା ସ୍ପଷ୍ଟ କରି ଦେଇଥିଲେ। ସେ କହିଥିଲେ ଦେଶରେ ଲୋକମାନଙ୍କ ମନରେ ଯେ ଏବେ ଗୋଟିଏ ନୂତନ ଜାଗରଣ ଦେଖା ଦେଇଛି, ସେମାନଙ୍କ ମନରେ ଯେ ଜାତୀୟତାବୋଧ ସୃଷ୍ଟି ହୋଇଛି ତାହା ଏ ସମାବେଶରୁ ପରିଷ୍କାର ହୋଇ ଯାଇଛି। ସେ ଆହୁରି ମଧ୍ୟ କହିଥିଲେ ଯେ ଆମ ମନ୍ତ୍ରୀ ମଣ୍ଡଳର ଶହେ ଦିନ ପୂର୍ଣ୍ଣ ହେବା ପରେ ପରେ ସଦ୍‌ଭାବନା ରାଲିର ସଫଳତା ସହିତ ଗୋଟିଏ ଅନ୍ତର୍ନିହିତ ସମ୍ପର୍କ ରହି ଆସିଛି।

ମୁଖ୍ୟମନ୍ତ୍ରୀ ସଭା ଶେଷରେ ମୋତେ ଧନ୍ୟବାଦ ଦେଇ ପକେଇଲେ। ସେ କହିଲେ ଏ ସଫଳତା ପଛରେ ରହିଛି ଆପଣଙ୍କ ନିଷ୍ଠା ଏବଂ ପରିଶ୍ରମ। ଏମିତି ଏକ ପ୍ରଶଂସାରେ ମୁଁ ସାଧାରଣତଃ ଉତ୍‌ଫୁଲ୍ଲ ହୋଇ ଉଠେନା। ତେଣୁ ପ୍ରତ୍ୟୁତ୍ତରରେ ମୁଁ ତାଙ୍କୁ କହିଥିଲି ଯେ ସେମିତି କିଛି ଆପଣ ଭାବନ୍ତୁ ନାହିଁ। ଲୋକେ ଏଣିକି ଠିକ୍ କଥାଟା ଜାଣିଲେଣି ଏବଂ ଦୀର୍ଘ ଦିନ ଧରି ସେମାନେ କିପରି ଯୋଜନାର ସୁଫଳ ଗୁଡ଼ିକରୁ ବଂଚିତ ହୋଇ ପ୍ରତାରିତ ହୋଇ ଆସୁଥିଲେ ସେ କଥା ଏବେ ସେମାନେ ବୁଝିଲେଣି।

ସେଇ ଦିନ ରାତିରେ ମୋର ଦିଲ୍ଲୀ ଫେରି ଯିବାର କଥା। ରାଜଧାନୀ ଏକ୍ସପ୍ରେସରେ ମୋର ରିଜରଭେସନ ହୋଇ ସାରିଥାଏ। ମୁଁ ଷ୍ଟେସନରେ ପହଞ୍ଚିଲା ବେଳକୁ ରାତି ବାର। ଷ୍ଟେସନ ପ୍ଲାର୍ଟ ଫର୍ମ କଥଣ, ତାର ପାଖାପାଖି ଅଞ୍ଚଳରେ ମଧ୍ୟ ତିଳ ପକେଇବାକୁ ଯାଗା ନ ଥାଏ। ରାଲି ପରେ ଲୋକେ ଫେରୁଛନ୍ତି। ଶୁଣିଲି ସରକାରଙ୍କ ତରଫରୁ ଯୋଗେଇ ଦିଆ ଯାଇଥିବା ତିନୋଟି ସେସାଲ ଟ୍ରେନର ଛାତ ଉପରେ ଚଢ଼ି ମଧ୍ୟ ଲୋକମାନେ ଯିବା ଆସିବା କରୁଥାନ୍ତି। ଲୋକଙ୍କ ସୁବିଧା ପାଇଁ କେତେକ ସ୍ୱେଚ୍ଛାସେବୀ ଅନୁଷ୍ଠାନ ସେମାନଙ୍କ ନିଜ ତରଫରୁ ମାଗଣାରେ ଖାଦ୍ୟ ପୁଡ଼ିଆ ଯୋଗାଇ ଦେଇଥିଲେ।

ଷ୍ଟେସନ ସୁପରିନ୍‌ଟେଣ୍ଡେଣ୍ଟ ମୋତେ ପାଛୋଟି ନେଲେ। କହିଲେ ଅଚାନକ ଭାବେ ଗାଡ଼ିଟା ଆଗ ଷ୍ଟେସନରେ ଅଟକି ଯାଇଛି। ଅଟକି ଯାଇଥିବା ଗାଡ଼ିର ଇଞ୍ଜିନ୍ ଟିକିଏ ବିଗିଡ଼ି ଯାଇଛି। ଏଇ ସଙ୍ଗେ ସଙ୍ଗେ ଠିକ୍ ହୋଇଯିବ। ଖୁବ୍ ବେଶିରେ ଘଣ୍ଟାଏ ଡେରି ହୋଇ ଯାଇ ପାରେ। ଏତେବେଳେ ଏବଂ ଏପରି ଅବସ୍ଥାରେ ଆପଣ ପୁଣି ଥରେ କାହିଁକି ହୋଟେଲକୁ ଫେରିବେ? ଏଇଠି ଟିକିଏ ବିଶ୍ରାମ ନେଇ ନିଅନ୍ତୁ। ଅବଶ୍ୟ ମୁଁ ଆପଣଙ୍କୁ ହୋଟେଲ 'ତାଜ ଇଣ୍ଟରନେସନାଲ'ର ସୁବିଧା ଏଠି ଦେଇ ପାରିବିନି। ତଥାପି ଖୁବ୍ ବେଶି ଅସୁବିଧା ହେବ ବୋଲି ମୁଁ ଭାବୁନାହିଁ। ଆପଣ ରିଲାକ୍ସ କରୁଥାନ୍ତୁ। ଗାଡ଼ି ଇନ୍ କଲେ ମୁଁ ଆପଣଙ୍କୁ ଡାକି ଦେବି।

ଗାଡ଼ି ଲେଟ୍ ଅଛି ଶୁଣି ମୋ ମୁଣ୍ଡକୁ ତେନ୍ତୁଳିଆ ବିଛା କାମୁଡ଼ିଲା। ପ୍ଲେନ୍‌ରେ ଯାଇଥିଲେ ଭଲ ହୋଇଥାନ୍ତା। କିନ୍ତୁ ଏଥର ମୋ ସ୍ତ୍ରୀ ମୋ ସାଥିରେ ଅଛନ୍ତି। ତାଙ୍କର ପୁଣି ବାଟରେ ଖଜୁରାହୋ ଦେଖିବାର ଇଚ୍ଛା। ସେ ମଡ଼ର୍ଣ୍ଣ ଆର୍ଟ ଓ ସ୍କଲପ୍‌ଚାର ଉପରେ ପ୍ରବନ୍ଧ ଲେଖନ୍ତି। ତାଙ୍କ ଲେଖା ଭାରତର ବିଭିନ୍ନ ସମ୍ବାଦ ପତ୍ର ଓ ଇଂରାଜୀ ପତ୍ରିକାରେ ନିୟମିତ ପ୍ରକାଶ ପାଏ। ଏବେ ସେ କେତେକ ବିଦେଶୀ ପତ୍ରିକାରୁ ଆଡ଼ଭାନ୍‌ସ ପାଇଛନ୍ତି ଖଜୁରାହୋ କଳା ଉପରେ ଗୋଟିଏ ଗବେଷଣାତ୍ମକ ପ୍ରବନ୍ଧ ଲେଖିବାକୁ। ତେଣୁ ତାଙ୍କର ଆଉ ଥରେ ସେଠାକୁ ଯିବା ନିହାତି ଦରକାର। ତା ଛଡ଼ା ମୋ ନିଜର, କଟ୍‌ନୀରେ 'ଅଲ୍ ଇଣ୍ଡିଆ ଡିପ୍ରେସ୍‌ଡ୍ କ୍ଲାସ ଲିଗ୍' ତରଫରୁ ଆୟୋଜିତ ଓ୍ୱାର୍ଲଡ୍ କନଫରେନ୍‌ସରେ ଭାଷଣ ଦେବାର ଥାଏ। ତେଣୁ ଦୁଇଟି କାରଣକୁ ଯୋଡ଼ି ଆମର କଟ୍‌ନୀରେ ଏବଂ ଖଜୁରାହୋରେ ଗୋଟାଏ ଦୁଇଟା ଦିନ ନାଇଟ୍ ହଲଟ୍ ପରେ ପୁଣି ଦିଲ୍ଲୀ ଯିବାର କଥା। କିନ୍ତୁ ଯେମିତି ହେଲେ ମୋତେ ଚତୁର୍ଥ ଦିନ ଦିଲ୍ଲୀରେ ପହଞ୍ଚିବାକୁ ପଡ଼ିବ। କାରଣ ସେଠି ସେ ଦିନ ଓ୍ୱେଲଫେଆର ମିନିଷ୍ଟ୍ରିର କନସଲଟେଟିଭ କମିଟି ମିଟିଂରେ ଯୋଗ ଦେବାର ଥାଏ।

ଏହା ଏକ ଗୁରୁତ୍ୱପୂର୍ଣ୍ଣ ମିଟିଂ। କାରଣ ଏଇ ମିଟିଂରେ ସରକାରଙ୍କର ନୂଆ ସମାଜନୀତି ଉପରେ କେତେକ ଜରୁରୀ ପଏଣ୍ଟ ଉପରେ ଆଲୋଚନା କରି ଡିସିସନ

ନେବାର ଥାଏ । କନସଲଟେଟିଭ କମିଟି ମିଟିଂରେ ଡିସିସନ ନେଲା ପରେ ବିଷୟ ଉପରେ ଆମର ଜାତୀୟ ନୀତି ସ୍ଥିରୀକୃତ ହେବ । ତାପରେ ପାର୍ଲାମେଣ୍ଟରେ ଗୋଟିଏ ବିଲ ମଧ୍ୟ ଆସିବାର ଥାଏ । ଏହି ନୀତି ଓ ବିଲ ଉପରେ ମୁଁ ଅନେକ ଦିନୁ ସରକାରଙ୍କ ଉପରେ ଚାପ ପକେଇ ଆସୁଚି । ସରକାରଙ୍କ ନୂତନ ଅର୍ଥନୀତି, ନୂତନ ଶିକ୍ଷା ନୀତି (ଯୋଉଥିରେ ଏଥର ସ୍କୁଲ ସ୍ତରରୁ ଯୌନ ଶିକ୍ଷା ଏବଂ ମା କ୍ଷୀରର ଉପଯୋଗୀତା ପ୍ରଭୃତି କେତେକ ବିଷୟ ଯୋଡ଼ା ଯାଇଛି) ନୂତନ ସ୍ୱାସ୍ଥ୍ୟ ନୀତି ପ୍ରଭୃତି ସବୁ ପ୍ରକାର ନୂତନ ନୀତି ଗୃହୀତ ହେଲା ପରେ ଦଳିତ ନିଷ୍ପେସିତ ବର୍ଗର ଉତ୍‌ଥାନ, ମାନେ ତାଙ୍କର ଜୀବନ ଧାରଣର ମାନ ଉନ୍ନତ କରିବାକୁ ଏଇ ନୂତନ ସମାଜନୀତି ମୋଟାମୋଟି ଭାବେ ମୋ ଦ୍ୱାରା ପ୍ରଣୀତ ହୋଇଛି । ତେଣୁ ବିଭାଗୀୟ ମନ୍ତ୍ରୀଙ୍କୁ ସବୁ ପ୍ରକାରେ ସାହାଯ୍ୟ କରିବାକୁ ମୋତେ କୁହା ଯାଇଥାଏ । ଏହା ଏକ ଶହେ କୋଟି ଟଙ୍କାର ଯୋଜନା । ବହୁ କଷ୍ଟରେ ଏଥର ଯୋଜନା ବୋର୍ଡ଼କୁ ରାଜି କରା ଯାଇଛି । ଏହା ଏକ ବିଭ୍ରାନ୍ତିକର ଏବଂ ଅନାବଶ୍ୟକ ବୋଲି ସେମାନେ ଫେରେଇ ଦେଇଥିଲେ । ସେମାନଙ୍କ ମତରେ ଏଇ ହେଡ୍‌ରେତ ପୂର୍ବରୁ ଯେତେ ଟଙ୍କା ରଖା ଯାଇଥିଲା ତାହା କିପରି ଭାବରେ ବ୍ୟୟିତ ହେଲା ତାର ହିସାବ ମିଳି ନଥିବାରୁ ପୁଣି ଥରେ ଏତେ ବେଶି ଟଂକା ରଖା ଯିବାର ଯଥାର୍ଥତା ନାହିଁ ।

ସେତେବେଳେ ମୁଁ ମନେ ମନେ ହସିଥିଲି । ଭୋଟ ସର୍ବସ୍ୱ ରାଜନୀତି ସହିତ ଯୋଜନାର ସମ୍ପର୍କ କେତେ ନିବିଡ଼ ସେ କଥା ଏ ବୁରୋକ୍ରାଟମାନେ ବା ବୁଝିବେ କୁଆଡୁ ।

କନସଲଟେଟିଭ କମିଟି ମିଟିଂ କଥା ମନେ ପଡ଼ିବାରୁ ମୋ ଦେହ ଶିତେଇ ଉଠିଲା । ମୁଁ ପଚାରିଲି ଟ୍ରେନ୍ ଆଉ ବେଶି ଡେରି ନାହିଁ ତ ? କାରଣ ଦିନ ୨ଟା ସୁଦ୍ଧା ମୋତେ କଟ୍‌ନୀରେ ପହଞ୍ଚିବାକୁ ହେବ । ମିଟିଂ ଅଛି ଚାରିଟାରେ । ସେ କହିଲେ ଆପଣ ବ୍ୟସ୍ତ ହୁଅନ୍ତୁନି । ଘଣ୍ଟାଏ ମୁଁ ସବୁଠୁ ବେଶି କହିଚି । ତା'ଠୁ ବେଶି ନୁହେଁ ।

ଅଗତ୍ୟା ଭି.ଆଇ.ପି. ଗେଷ୍ଟରୁମ୍‌କୁ ଆମେ ଗଲୁଁ । ସେ ରୁମ୍‌ଟା ଏକଦମ ଷ୍ଟେସନର ଶେଷକୁ । ପଛପଟେ ଗୋଲାପ ବଗିଚାଟିଏ । ସାମନା ପଟେ ଦୁଇ ମନ୍ଦା ହେନା ଗଛ । ଖଣ୍ଡେ ଦୂରରୁ ବାୟୁ ମଣ୍ଡଳ ମହକି ଯାଉଛି । ମୋ ସ୍ତ୍ରୀକୁ କହିଲି ତମେ ଟିକିଏ ଭିତରେ ଗଡ଼ପଡ଼ ହୁଅ । ମୁଁ ଏଇ ବାରଣ୍ଡାରେ ବସୁଛି । ଏ.ସି. ଟାତ ଆଗରୁ ଅନ୍ ଥିଲା । ସେ ଲମ୍ବ ହୋଇ ଶୋଇ ପଡ଼ିଲେ । ଷ୍ଟେସନ ସୁପରିନ୍‌ଟେଣ୍ଡେଣ୍ଟ ଚାଲିଗଲେ । ମୁଁ ବାରଣ୍ଡାରେ ପଡ଼ିଥିବା ଧୋବ ଫର ଫର ବିଛଣା ଚାଦର ପରି ଆଲୁଅରେ ଆରମ ଚେଆର ଖଣ୍ଡେ ପକେଇ ଆଗାମୀ କାଲିର ବକ୍ତୃତା ଓ କନସଲଟେଟିଭ କମିଟିର ଏଜେଣ୍ଡା ଉପରେ ମନେ ମନେ ଟିକିଏ ଟିପ୍‌ପଣୀ ପ୍ରସ୍ତୁତ କରି ନେଉଥିଲି ।

ମୋ ବାପା ରାଜ୍ୟ ମନ୍ତ୍ରୀମଣ୍ଡଳରେ ଜଣେ ସଦସ୍ୟ ଥିଲେ । ତାଙ୍କ ବାପା ଫ୍ରିଡ଼ମ୍ ଫାଇଟର ଥିଲେ । ଥରେ ଦି ଥର ଜେଲ ମଧ୍ୟ ଯାଇଥିଲେ । ମୋ ମାଆ

ଅନେକ ଦିନ ଯାଏ ରାଜ୍ୟସଭାରେ ସଦସ୍ୟ ଥିଲେ। ସେମାନେ ଦେଶ ବିଦେଶ ଅନେକ ବୁଲୁଛନ୍ତି। ଆଫ୍ରିକାରୁ ଆମେରିକା ଯାଏ ଅନେକ ଥର ଗସ୍ତରେ ଯାଇ ,ସେଠାରେ ଦାରିଦ୍ର୍ୟର ସୀମାରେଖା ତଳେ ଥିବା ଲୋକମାନଙ୍କ ପାଇଁ ସରକାର କଅଣ କଅଣ କରିଛନ୍ତି ବା ସେମାନଙ୍କୁ ଚିହ୍ନଟ କିପରି କରାଯାଇ ପାରିବ, ଏ ସବୁ ବିଷୟରେ ଅନେକ ବହି ଲେଖିଛନ୍ତି।

ମୋର ବୋଧେ ଛାଇ ନିଦ ଆସି ଯାଇଥିଲା। ଦିନ ଯାକର ପରିଶ୍ରମ ଯୋଗୁଁ ବୋଧେ। ହଠାତ୍ ଗୋଟିଏ ଛୋଟ ପିଲାର କାନ୍ଦଣାରେ ମୋ ନିଦ ଭାଙ୍ଗିଗଲା। କିଏ କାନ୍ଦୁଛି ? କେଉଁଠି ?

ରେଳବାଇ ତାରବାଡ଼ ସେପଟେ। ତାଳପତ୍ରର ଛାଉଣୀ ପରି କରି ତା ତଳେ ଆଶ୍ରୟ ନେଇଥିବା ପରିବାରଟିଏ ହେବ ବୋଧେ। ଛାଉଣୀକୁ ଅବଶ୍ୟ ଘୋଡ଼େଇ ରଖୁଚି ବିରାଟ ବରଗଛର ଡାଳ ପତ୍ର। ସାମାନ୍ୟ ଝିପିଝିପି ବର୍ଷା ଆସିଛି। ଖଣ୍ଡେ ଦୂରରେ ଥିବା ଲାଇଟ୍ ପୋଷ୍ଟରୁ ମିଞ୍ଜି ମିଞ୍ଜି ଆଲୁଅ ପଡୁଚି ଓସ୍ତ ଗଛ ତଳେ।

ପୁଣି ଶକ୍ତ ଚାପୁଡ଼ାଟାଏ ବସିଲା ପିଲାର ପିଠିରେ। ପିଲାଟା ଚାରିବର୍ଷ ହେବ ବୋଧେ। ଚିତ୍କାର କରି ଉଠିଲା ସେ। ବଡ଼ କରୁଣ ସେ ସ୍ୱର। ପିଲାର ଚିତ୍କାର ଯେତିକି ବଢୁଚି ତା ମା ତାକୁ ସେତିକି ଜୋରରେ ପିଟୁଚି। ଚୁପ୍ କର, ଚୁପ କର କହୁଚି। ପିଲାର ସ୍ୱର ଟିକିଏ କମିଲା।

ମୁଁ ଆରାମ ଚେଆରରୁ ଝୁକି ପଡ଼ି ଅନେଇଲି। ରୋଗୀଣା ମା ଟିଏ ହେବ। କୋଳରେ ଧରିଚି ଆଉ ଗୋଟିଏ ଶିଶୁ। ଶିଶୁ ଧରିଚି ମା'ର ଥନକୁ। ଖରାଦିନର ନଈ ପରି ଶୁଖିଲା ଥନ ଛାତିରେ ମିଶି ଯାଇଚି। ଦେହ ପ୍ରାୟ ଫୁଙ୍ଗୁଳା। ତେଣୁ ପରିଷ୍କାର ଦେଖା ଯାଉଚି। ଉପରୁ ବର୍ଷା ପାଣି ପଡୁଚି ଟପ୍‌ଟପ୍। ମା ବାଁ ହାତରେ କୋଳେଇଚି ଶିଶୁକୁ ଏବଂ ସେଇ ହାତରେ କଳା ମଳିଚିଆ ସିଲଭର ଥାଳିଆଟାକୁ ଟେକି ଧରିଚି ଶିଶୁର ମଥା ଉପରେ ବର୍ଷା ପାଣିରୁ ରକ୍ଷା ପାଇବାକୁ।

"ଆଉ ଟିକିଏ ପରେ ଗାଡ଼ି ଆସିବ, ଯିବୁତ ?" ମା କହିଲା ପିଲାକୁ। ପିଲାଟିର କାନ୍ଦଣା ସେ ଯାଏ କମିନି। ସେମିତି କାନ୍ଦୁଥାଏ ତୁହାକୁ ତୁହା। ପୁଣି ଗୋଟିଏ ଶକ୍ତ ଚାପୁଡ଼ା ପିଲାର ଗାଲରେ। "ତୋତେ କହୁଚି ପରା, ଶୁଭୁନି ?" କାନ୍ଦି କାନ୍ଦି ପିଲାଟି କହିଲା "ମୋତେ ଡ଼ର ମାଡୁଚି, ଏକେଲୀ ଯିବିନି, ତୁ ଚାଲେ।"

"ମୁଁ ଯଦି ତୋ ସାଙ୍ଗରେ ଯିବି ଏଠି ଯା ସାଙ୍ଗରେ ମରିବ କିଏ ?" ମା କହିଲା ଦାନ୍ତ କଡ଼ମଡ କରି।

"ମୁଁ ଏକେଲା କେବେ ଯାଇନି।"

"ଏଥର ଯା, ତୁ କଅଣ ଏକୁଟିଆ। ଏମିତି କେତେ ଯାଉଛନ୍ତି ନା।"

"ମୁଁ ଉବାକୁ ଉଠି ପାରୁନି।"

''ଏଁ, ଉଠି ପାରୁନି ?'' ମା କହିଲା ଖଡେଇ ହୋଇ। ''ଯେମିତି ହେଲେ ଉଠିବାକୁ ହେବ। ଥରେ ଉଠିଗଲେ ହେଲା।''

''ମୁଁ ସେଦିନ ତୋ କାନି ଧରି ଉଠୁ ଉଠୁ ତଳେ ପଡ଼ିଗଲି।''

''ବେଶି ବକ୍ ବକ୍ କରନା। ପଡ଼ିଗଲେ କଣ ହେଲା। ତୋ ମୁଣ୍ଡ ଫାଟି ଯାଇଚି ? ହାତ ଗୋଡ଼ ଭାଙ୍ଗି ଯାଇଚି ? କାଇଁ କିଛି ତ ହୋଇନି। ଠିକ୍ ବଞ୍ଚିଚୁ। ପେଟେ ଖାଉଚୁ। ବଳ ଗଲା କୁଆଡ଼େ ?''

'ଆଜି କିଛି ଖାଇନି।' ତାର କାନ୍ଦ କମି ନ ଥାଏ।

ଖଣ୍ଡ ଚାପୁଡ଼ାଟାଏ କସି ମା ପୁଣି କହିଲା, ''ଖାଇନୁ ? ଗାଡ଼ିର ସେ ବୁଢ଼ାଟା ତା ଥାଳିର ଅଧେ ପରା ତୋତେ ଦେଇଥିଲା। ମୁଁ ଦେଖିନି ? ଏଇ ଖରା ବେଳଟାରେ ମିଛ କେମିତି କହୁଚୁ ? ଫେର ଦେଖିବୁ ? ଆଉ କେତେ ଖାଆନ୍ତୁ ? ମରନ୍ତୁ, ମଲାଟା ଆଉରି ଖାଇବି କହୁଚି, ଉଠ୍ ଉଠ୍ କହୁଚି। ମୁଁ ଯାକୁ ସେଇଠି ଶୁଆଇବି।''

ସଂପୂର୍ଣ୍ଣ ଅନିଚ୍ଛା ସତ୍ତ୍ୱେ ପିଲାଟି ଠିଆ ହେଲା। ଆଣ୍ଠୁରେ ହାତଦେଇ ସେ ଯେମିତି ଉଠିଲା ମୋର ମନେ ହେଲା ମାଡ଼ର ଦରଜ ତାର ମୋଟେ ଜିମିନି। ଅନେକ କଷ୍ଟରେ କୁଞ୍ଚେଇ କୁଞ୍ଚେଇ ଠିଆ ହେଲା। ସଳଖି ଠିଆ ହୋଇ ପାରୁନି। ଉପରୁ ବାଦୁଡ଼ିଟିଏ କି ଚଢ଼େଇଟିଏ ହଗିଦେଲା ବୋଧେ ପିଲାର କାନ୍ଧ ଉପରେ। ପାପୁଲିରେ ପୋଛି ଆଣି ଗଛ ଦେହରେ ନେସି ଦେଲା। ପୁଣି ଠିଆ ହୋଇ ଲୁହ ପୋଛିବାକୁ ଲାଗିଲା।

''ଏୟ, ଆହୁରି ଠିଆ ହେଉଚୁ ? ଆଉ କେତେବେଳେ ଯିବୁ ? ଗାଡ଼ି ବେଳ ହେଲାଣି ପରା ? ଯା ଦେଖିବୁ ତୋତେ ଛାଡ଼ି ଆଉ ସବୁ ପିଲା ଯୋଗ୍ୟ ଜାଗାରେ ଠିଆ ହୋଇ ଯିବେଣି। ଗାଡ଼ି ଆସିବା ମାତ୍ରେ ଖପାଖପ ଉଠି ପଡ଼ିବେ। ତୁ ଡେରିରେ ଗଲେ ତେଣେ କଣ ଜବା ମିଳିବ।''

ସାମାନ୍ୟ ଶୀତ ଲାଗିଲାଣି। ପିଲାଟି ଫୁଗୁଳା ଦେହକୁ ତା'ର ଦୁଇ ହାତରେ ଛକି ପକେଇ ଘୋଡ଼େଇବାକୁ ଚେଷ୍ଟା କଲା। କାନ୍ଦର ଲହର ସେମିତି ଚାଲିଥାଏ।

ମା ସାନ ପିଲାଟିକୁ ଖଣ୍ଡେ ଚିଣ୍ଡା କନା କନା ଉପରେ ପକେଇ ଦେଲା। କହିଲା ''ମୋ ରକ୍ତ ଶୋଷିବାକୁ ତମେ ବି'ଟା ଜନ୍ମ ହୋଇଥିଲ। ଆଉ ଅଛି ଯେ ଶୋଷିବ। ଆଉ କେଇଦିନ।''

ମୁଁ ଚେଆରଟାକୁ ବାରଣ୍ଡା ଧାରକୁ ଆଉ ଟିକିଏ ଟାଣି ନେଲି କଥାଟା ଠିକ୍ ଭାବେ ଶୁଣିବା ପାଇଁ।

ଅଢ଼େଇ ଫୁଟର ପିଲାଟା ଠିଆ ହେଇ ଆଖି ମଳୁଚି। ପେଟ ସାମାନ୍ୟ ଫୁଲି ଉଠିଚି। ମୁଣ୍ଡଟା ଅପେକ୍ଷାକୃତ ବଡ଼। ମୁହଁଟା ପରିଷ୍କାର ଦେଖା ଯାଉ ନ ଥିଲେ ମଧ୍ୟ ତେଲ ସରି ଆସୁଥିବା ଦୀପ ଶିଖା ପରି ମଳିନ ପଡ଼ି ଆସିଚି। ପଞ୍ଜରାର ହାଡ଼ ଓ ମୁହଁରୁ ହାଡ଼ମାନେ ନିଜର ଅସ୍ତିତ୍ୱ ଜାହିର କରିବାକୁ ଚେଷ୍ଟା କଲେଣି।

"ଆହୁରି ଠିଆ ହେଉଚୁ?" ଏଢ଼େ ଏଢ଼େ ଆଖି କରି ମା କହିଲା।

କାନ୍ଦ ବନ୍ଦ କରି ପିଲାଟା କହିଲା– "କାଲି ସକାଳ ଗାଡ଼ିରେ ଯିବି। ଏବେ ନିଦ ମାଡୁଚି। ଭୋକ ବି କରୁଚି।"

ମାଉଲା ଶକ୍ତ ଧକ୍କାଟିଏ ପିଲା ପିଠିରେ। ପିଲାଟା ନଳା ମୁହଁ ପାଖରେ ହାମୁଡ଼େଇ ପଡ଼ିଲା ଏବଂ ଚିତ୍କାର କରି ଉଠିଲା। ପେଟ ପାଖରୁ ପିଲାର ମୁଣ୍ଡଟା ନାଳର ସିମେଣ୍ଟ ବନ୍ଧ ଉପରୁ ତଳକୁ ଝୁଲି ପଡ଼ିଲା।

ମୁଁ ଉଠି ପଡ଼ିଲି ଚେୟାର ଛାଡ଼ି। ତଳେ ପିଲାଟା ପଡ଼ି ଗଲା କି? ନାଳଟା ଗଭୀର ଏବଂ ସେଥିରେ ସହର ଯାକର ମଇଳା ପାଣିର ପ୍ରବଳ ସୁଅ ଛୁଟୁଥିଲା।

ମାଆ ପିଲାର ଗୋଡ଼ ଦି'ଟା ଧରି ଟାଣି ପକେଇଲା। ତାକୁ ତାର ଗୋଟାଏ ଡେଣା ଧରି ଉଠେଇଲା। ତାର ମୁହଁ ଓ ମୁଣ୍ଡରେ ଲାଗିଥିବା ମାଟି କାଦୁଅ ସବୁ ନିଜ କାନିରେ ପୋଛି ଦେଲା। ତାପରେ ତାକୁ କୋଳକୁ ଟେକି ନେଇ ତା ପିଠି ଆଉଁସି ଦେଲା।

ମୁଁ ସେମିତି ଠିଆ ହେଇ ଦେଖୁଥାଏଁ। କାରଣ ସେ ପଟରେ ଦୃଶ୍ୟ ମାତ୍ର ଦଶ ପନ୍ଦର ଗଜର ଦୂରତ୍ୱ।

ତାପରେ ମା ତାକୁ ବୋଳ ଦେଇ ତଳେ ଠିଆ କରେଇଲା ଏବଂ କହିଲା "ଦେଖ୍, ତୁ ଯଦି ଏବେ ନ ଯାଉ, ମାଗିବା ନ ଶିଖୁ, ତୁ ଜାଣିବୁ କେମିତି? ଆଉ ଖାଇବୁ କୋଉଠୁଁ? ନିତି ନିତି ମୁଁ ତୋ ପାଇଁ କୋଉଠୁ ଆଣିବି? କେତେ ବା ଆଣିବି? ତୁ ଗଲେ ତୋତେ ଲୋକେ ଯା ହେଉ ଦି ପଇସା ଦେବେ। ମୋତେ ଆଉ କିଏ ଦଉଚି? ରାତି ଗାଡ଼ିରେ ଯାଇ ସକାଳ ଗାଡ଼ିରେ ଫେରିଲେ ଯାହା ମିଳିବ ସେଥିରେ ତୁ ଅନ୍ତତଃ ଦିନେ ଚଳି ଯାଇ ପାରିବୁ।"

ସେ ତା ନିଜର ଲୁହ ପୋଛି ପକେଇଲା। ତାର ଗଳା ଘାଗଡ଼ା ହେଇ ଆସିଲା। କହିଲା– ମୁଁ ବି ତୋରି ବୟସରୁ ଏ କାମ ଆରମ୍ଭ କରିଥିଲି। ମୋ ମା ମୋତେ ଦିନେ ଛାଡ଼ି ପଳେଇଲା, ଏଇମିତି ଷ୍ଟେସନରେ। ମୁଁ ଶୋଇଚି। ଉଠିଲା ବେଳକୁ ଦେଖା ନାହିଁ। ଅନେକ ଖୋଜିଲି, କେତେ କାନ୍ଦିଲି, ଦିନେ ଦି'ଦିନ ପରେ ଆଉ ଖୋଜିଲିନି କି କାନ୍ଦିଲିନି। କ'ଣ ଲାଭ? ଆମେତ ଏଇଥିରେ ଜନ୍ମ। ଏଇଥିରେ ମରଣ। ତେବେ କାନ୍ଦିବି କାହିଁକି? ତୁ ବି କାନ୍ଦିବୁ କାହିଁକି? କାନ୍ଦିଲେ କେହି ଦେବ? ପେଟ ପୂରିବ? ଆମକୁତ ମାଗିବାକୁ ହେବ। ହାତ ପତେଇବାକୁ ପଡ଼ିବ। ଆଜି ନୁହେଁ, ବରାବର। ସୂର୍ଯ୍ୟ ଚନ୍ଦ୍ର ଥିବା ଯାଏ।

"ମୋର ଯେ ପେଣ୍ଟ ନାହିଁ। କେମିତି ଯିବି?" ପିଲା ତା ମାଆକୁ ଚାହିଁ କହିଲା, କାନ୍ଦ ଟିକିଏ କମି ଯାଇଚି। ହୁଏତ ଭାବିଲା ମାଆ ଏଇନେ ମନା କରି ଦେବ। କହିବ, ଆଜି ଥାଉ। କାଲି ଖଣ୍ଡେ ଛିଣ୍ଡା କନା ଆଣିଲେ ଯିବୁ।

କିନ୍ତୁ ସେ କଥା ହେଲା ନାହିଁ। ସେ ତତ୍‌କ୍ଷଣାତ୍ କହିଲା "ଲଙ୍ଗଳା ହେଉଛୁ ତ? ହଉ, ଏଇ ନେ।" ସେ ଫଡ୍ ଫାଡ୍ କରି ତା ପିନ୍ଧା ଲୁଗା କାନିରୁ ହାତେ ଖଣ୍ଡେ ଚିରି ତାକୁ ପିନ୍ଧେଇ ଦେଲା। ତା ପରେ କହିଲା, "ଏଥର ଯା, ସୁନାଟା ପରା। ଏ ଟାକୁ ତ ଚର। ମୁଁ କେମିତି ଯିବି କହିଲୁ?"

ପିଲାଟି ଠିଆ ହେଲା। ଭାବିଲା ବୋଧେ ଆଉ ଉପାୟ ନାହିଁ। ଯିବାକୁହିଁ ହେବ। ଚାଲି ଯିବାଟା ବରଂ ଭଲ। ଏଠି ଏମିତି ଦହଗଞ୍ଜ ହେବା ଅପେକ୍ଷା ଚାଲିଯିବା ଭଲ। ସେ ଥରେ ପ୍ଲାଟଫର୍ମ ଆଡ଼କୁ ଅନେଇଲା।

"କଅଣ ହେଲା? ମାଆ ମନରେ ଆଶା ଓ ବିଶ୍ୱାସ, ପିଲାଟା ବୁଝିଗଲା ବୋଧେ।"

"ଶୁଣ, ସେ ଝାଡୁଟା ନେ। ସେଇଥିରେ ବେଞ୍ଚତଳେ ପଶି ମଇଳା ସବୁ ଗୋଟେଇ ଆଣିବୁ। ଭଲ କରି ଆଣିବୁ। ଲୋକଙ୍କ ଜିନିଷ ପତ୍ର ମୋଟେ ଏ ପାଖ ସେ ପାଖ କରିବୁନି। ଯୋଉଠିକା ଜିନିଷ ସେଇଠି ରଖିବୁ। ଜୋତା ଚପଲ ବି। ଲୋକଙ୍କ ଗୋଡ଼ରେ ଯେମିତି ତୋ ଝାଡୁ ନ ବାଜେ। ସାବଧାନ। ହଁ ଆଉ ଗୋଟିଏ କଥା, ଭୁଲରେ ବି ତଳେ ପଡ଼ିଥିବା ପଇସା ଉଠେଇବୁନି। ଝାଡୁ ଦେଇ ସାରି ସମସ୍ତଙ୍କୁ ମାଗିବୁ। ଯିଏ ଯାହା ଦେଲା। ସକାଳ ଗାଡ଼ିରେ ଫେରିବୁ।" ତାପରେ ଟିକିଏ ଚାହିଁ ଭଙ୍ଗା ଗଳାରେ କହିଲା, "ତୁ ଆସିଲେ ମୁଁ, ଆଉ ଏ ଛୁଆଟା ଟିକିଏ କିଛି ପାଟିରେ ଦେବାରେ। ତୁ ତ ଦେଖୁଚୁ, ଯା ପାଇଁ ମୁଁ ଦିନ ଯାକ ଏଠୁ ଉଠିନି।"

"ତୁ ଆଜି କିଛି ଖାଇନୁ?" ପିଲା ପଚାରିଲା ମାଆକୁ।

"କେତେବେଳେ ଆଉ ଖାଇଲି? କଅଣ ଥିଲା ଯେ? ଦେଖୁଚୁତ ଦିନ ଯାକ ୟାକୁ ନେଇ ଏଇଠି ବସିଚି।"

"ମୁଁ ଜାଣିଥିଲେ ନା....... ସେ ତାର ମା'ର ମୁଣ୍ଡଟାକୁ ନିଜ ଛାତି ଆଡ଼କୁ ଆଉଜାଇ ନେଲା।"

ମୋ ସ୍ତ୍ରୀ କବାଟ ଖୋଲି ଭିତରୁ ବାହାରି ଆସିଲେ। କହିଲେ, "ଆରେ ତମେ ଏ ଯାଏ ଶୋଇବାକୁ ଯାଇନ? ଦେହ ଖରାପ ହେବ ଯେ।" ମୁଁ କିଛି ନ କହିବାର ଦେଖି ପୁଣି ପଚାରିଲେ, "ଗାଡ଼ି ଆଉ କେତେ ଡେରି?"

ମୁଁ କହିଲି, "ଅନିଶ୍ଚିତ। ଏଇ ଏବେ ଏବେ ମାଇକରେ କହୁଥିଲା ଅନିଶ୍ଚିତ କାଳ ପାଇଁ ଆମ ଗାଡ଼ିଟା ଆଗ ଷ୍ଟେସନରେ ଅଟକି ଯାଇଚି।"



*(ଅନିଶା, ପୂଜା ବିଶେଷାଙ୍କ, ୧୯୯୪)*

# ଶେଷ ପାହାଚ

ସମସ୍ୟାଟା ଆମର ଆରମ୍ଭ ହେଲା ମୋର ଚାକିରିରୁ ଅବସର ନେଲା ପରେ। ଚାକିରି ଥିଲା ବେଳେ କେତେ ଗାଡ଼ି, କେତେ ଲୋକ ତା'ର କଳନା ନାହିଁ। କାମ ନ ଥିଲେ ବି ଲୋକ ଆସି ପହଞ୍ଚି ଯାଉଥିଲେ। ପଚାରୁ ଥିଲେ ପଛ ପାଖରେ ସେ କୃଷ୍ଣଚୂଡ଼ା ଗଛ ମୂଳରେ ଯୋଉ ପିଣ୍ଡାଟା ତିଆରି ହେଇ ଥିଲା ତା'ର ପଲସ୍ତରା ଖସି ଯାଇଚି। ମୁଁ ଲୋକ ଠିକ୍ କରିଚି। ତାକୁ ସେ ସଜାଡ଼ି ଦେବ। ଆଉ କିଏ ଆସି କହେ ଶୁଣିଲି ଆପଣଙ୍କ ଦେହ ଭଲ ନାହିଁ। ଡାକ୍ତର ଝାଙ୍କୁ କହି ଦେବି ସେ ଟିକେ ଆସି ଦେଖି ଦେଇ ଯିବେ ?

ସ୍ୱର୍ଗର ଇନ୍ଦ୍ର ଓ ପୁଲିସ ଚାକିରି ଭିତରେ ମୁଁ ସେ ଦିନ କୌଣସି ଫରକ ଦେଖୁ ନ ଥିଲି। ଜଣେ ତାର ସ୍ୱର୍ଗ ରାଜ୍ୟର ହ୍ୱାଇଟ୍ ହାଉସ୍‌ରେ ଥିବା ରତ୍ନ ସିଂହାସନରେ ଘିଅ ମହୁରେ ହାତ ଧୋଇ ସୁରାରେ ବୁଡ଼ି ଏବଂ ଶାକୀମାନଙ୍କ ଗହଣରେ ରାଜ୍ୟ ଶାସନର ଖସଡ଼ା ତିଆରି କରେ। ଆଉ ଜଣେ ନିଜସ୍ୱ ପରିଧିର ମୟୂର ସିଂହାସନରେ ବସି ସୁରା ଓ ସାକୀର ସ୍ୱପ୍ନରେ ମସ୍‌ଗୁଲ୍ ଥିଲା ବେଳେ ବାଦଶାହୀ ଶାସନ ମାଧ୍ୟମରେ ଗୋଟିଏ ପରେ ଗୋଟିଏ ନିଜ ପାଇଁ, ସ୍ତ୍ରୀ ପାଇଁ, ଶଳା ଓ ଶାଳୀ ପାଇଁ ନିଜର ହ୍ୱାଇଟ୍‌ହାଉସ ତିଆରି କରି ଯାଏ।

ଇନ୍ଦ୍ର ଆଜି ପରାଜିତ। ପରାଜିତ ମଣିଷ ପାଖରେ। ଜନ୍ମ-ଜନ୍ମାନ୍ତରରୁ ଆଶୀର୍ବାଦ ପାଇ ଆସୁଥିବା 'ସିଲଭର୍ ସ୍ପୁନ୍'ର ବରପୁତ୍ରମାନେ ଯୋଉମାନେ ଆଜି ସ୍ୱାଧୀନତାର ପଚାଶ ବର୍ଷ ପୂର୍ତ୍ତୀ ସହିତ ଶାସନର ସୁବର୍ଣ୍ଣ ଜୟନ୍ତୀ ପାଳନ ବେଳକୁ ବଂଶାନୁକ୍ରମେ ଅଭିଶାପ ପାଇ ଆସୁଥିବା ଆଫ୍ରିକୀୟ ପୃଥିବୀର ନରକର କୀଟମାନଙ୍କୁ ମଧ୍ୟ ସେମାନଙ୍କର ଦରିଦ୍ରତମ ଅବସ୍ଥାର ସୁବର୍ଣ୍ଣ ଜୟନ୍ତୀ ପାଳନ ପାଇଁ ପଟା ପାଉଚି ଧରାଇ ଦିଅନ୍ତି ସେଇମାନଙ୍କ ପାଖରେ ଇନ୍ଦ୍ର ଆଜି କୁର୍ଣ୍ଣିସ କରି କହନ୍ତି, 'ହାଲୋ ! ଭଇସ୍ ଭଗ ଅଲ ଦି ବେଷ୍ଟ।''

ମୁଁ ସେଇମାନଙ୍କ ଭିତରୁ ଜଣେ। ମୋ ପାଦ ତଳର ମାଟି ମୁଲାୟମ ଦୁଧ ଫେଣର ଗାଲିଚାରେ ତିଆରି। ମୁଣ୍ଡ ଉପରର ଆକାଶରେ ସବୁ ବେଳେ ଥାଏ କୋକିଳର କୂଜନ। ସେ ଋତୁ ବସନ୍ତର ହେଉ ବା ନିଦାଘର ହେଉ। ସେ ଋତୁ ଶୀତର ହେଉ ବା ଆଦ୍ୟ ଆଷାଢ଼ର ହେଉ।

ନିର୍ଦ୍ଦେଶ ଦେବା ମାତ୍ରେ ହିଁ କୋକିଳମାନେ ମଳୟକୁ ସାଙ୍ଗରେ ଧରି ଆମ୍ର ବଉଳର ଚାରି ପାଖରେ ମଧୁଚୋର ମହୁମାଛିମାନଙ୍କ ସହିତ ଆରମ୍ଭ କରି ଦିଅନ୍ତି ପପ୍ରର ମଧୁର ମୂର୍ଚ୍ଛନା। ଆଉ ଅଫିସ କରିଡ଼ର ପାଖରେ ଆଦେଶକୁ ଅପେକ୍ଷା କରି ଥାଆନ୍ତି ବିଶ୍ୱ-ସୁନ୍ଦରୀ ବାରଙ୍ଗନାମାନେ "କୁହ ମୋତେ କୁହ, ଖାଲି ଇଂଗିତ ହିଁ ଯଥେଷ୍ଟ। ପାଟି ଖୋଲିବାର ଆବଶ୍ୟକ କଅଣ ?"

Every man in the universe is bastard"ଏ କଥା ପ୍ରମାଣିତ ହେଇ ଯାଇଚି ଆଉ କୋଉଠି ନ ହେଲେ ବି ଏଇ ଭାରତରେ। ବୁରୋକ୍ରେସୀର ଓଢ଼ଣା ଭିତରେ ଶାସନ ବଦଳି ଗଲେ ସମସ୍ତେ ବେଶ୍ୟା ରୂପରେ ଅବତୀର୍ଣ୍ଣ ହେଇ ପଡ଼ନ୍ତି। ଆଉ ସୁବିଧା ଓ ସୁଯୋଗ ଦେଖି କହି ଦିଅନ୍ତି "ମୋତେ ଟିକିଏ ଭଲ ପାଅ। ତମର ନିଗୋଡ଼ ପ୍ରେମରୁ ମୋତେ—ଖାଲି ମୋତେ ଟିକିଏ ମୋର ଝିଲିମିଲି ଶାଢ଼ୀ ପଣତରେ ଅଜାଡ଼ି ଦିଅ। ମୁଁ ତମର। ଏକାନ୍ତ ଭାବେ ତୁମର।"

ମୋ ସ୍ତ୍ରୀ ଆସି ଚା' କପ୍‌ଟେ ଥୋଇ ଦେଲେ ଏବଂ ଅସଂଖ୍ୟ ଯନ୍ତ୍ରଣାର ରଂଗ ଫୁଟେଇ ମୋତେ କହିଲେ, "ତମେ ଶିଘ୍ର କିଛି ଗୋଟିଏ ବ୍ୟବସ୍ଥା କର। ନଚେତ୍ ମୋ ଦେଇ ଏ ସବୁ ହେଇ ପାରିବନି।"

ସତେତ, କୋଉ ଦିନ ସେ ଏ ସବୁ କାମ କରିଥିଲେ ଯେ ? ସକାଳ ଆଠଟା ପୂର୍ବରୁ ତ ସେ କେବେ ବିଛଣା ଛାଡ଼ି ନାହାନ୍ତି। ଚା' କପ୍‌ଟିଏ ତିଆରି କରିବାତ ଦୂରର କଥା। ଚା'ଟା ରୋଷେଇ ଘରର କୋଉ ଜାଗାରେ ଏବଂ କୋଉ ଡବାରେ ଅଛି ସେ କଥା ମଧ୍ୟ ସେ ଜାଣୁ ନଥିଲେ। ଅଡ଼ର୍ଲି ଆସି ଚା' ତିଆରି କରି ଟେବୁଲ ଉପରେ ଥୋଇଲେ ମେଡ଼ମ୍ ଉଠନ୍ତି।

ଆଜି ୩୫ ବର୍ଷ ହେଲା ଏଇ କଥାତ ଗଡ୍‌ଡ଼ାଳିକା ପ୍ରବାହରେ ପରିଣତ ହେଲାଣି। ସକାଳୁ ଉଠି ଘରର କାମ କରିବା ଆଜି ବି ହେଇନି କି ସେ ଦିନ ମଧ୍ୟ ହେଉ ନଥିଲା। ଏପରିକି ପିଲାଛୁଆ ସ୍କୁଲ ଯିବା ବେଳେ ମଧ୍ୟ ସକାଳୁ ସବୁ କାମ ଅଡ଼ର୍ଲି କିମ୍ବା ଆୟା କରେ। ପିଲାମାନେ ବେଶ ପୋଷାକ ପିନ୍ଧି ବାହାରିଲା ବେଳକୁ ଶେଷ ରାତ୍ରୀର ବେଶ ସଜାଡ଼ୁ ସଜାଡ଼ୁ ଅଳସ ଭାଙ୍ଗି ମେଡ଼ମ୍ ଫୁଲକୁଣ୍ଡ ଘେରା ବାରଣ୍ଡା ଉପରେ ଚେଆର ଖଣ୍ଡିକରେ ବସି ପଡୁ ପଡୁ ହାଇ ମାରି ପିଲାମାନଙ୍କୁ ବିଦାୟ ଦେଲାବେଳେ କହି ଦିଅନ୍ତି 'ବାୟ'।

ମୁଁ କହିଲି,. "କଅଣ କରିବି କୁହ। ସମସ୍ତଙ୍କୁ ତ କହି ସାରିଲିଣି। କେହି ସେମିତି କିଛି ଗୋଟେ ଖବର ମଧ୍ୟ ଦଉ ନାହାନ୍ତି। ଏପରିକି ଠିକା ଚାକରାଣୀଟିଏ ମଧ୍ୟ ମିଳୁନି। ମୁଁ ତ ମାସକୁ ଚାରିଶହ ଯାଏ ଦେବାକୁ ପ୍ରସ୍ତୁତ ବୋଲି କହି ଦେଇଚି।"

"ଧେତ୍, ତମର ଯୋଉ ବୁଦ୍ଧି। ଏଇଥି ପାଇଁ ତମକୁ କେହି କିଛି ଖବର ଦେଉ ନାହାନ୍ତି। ଚାରିଶହ ଟଙ୍କା କହିଲେ ସେମାନେ ତମକୁ ଚାକରାଣୀର ଦାମ

ବଡ଼ଉଚ ବୋଲି କହିବେ। ତମେ ଜାଣିଚ ଏବେ ଏ ସହରରେ ଠିକା ଚାକରାଣୀର ଦାମ କେତେ ? ଦୁଇଶହରୁ ବେଶି ନୁହେଁ। ଆମେ କାମ ଦେଖି ପଇସା ଦେବା।''

ମୁଁ ଆଁ କରି ତାଙ୍କ ମୁହଁକୁ ଅନେଇ ରହିଲି। ସେ ଯେ ଅର୍ଥନୀତିର ଛାତ୍ରୀ ଥିଲେ ଏ କଥା ମୋର ମନେ ପଡ଼ିଲା।

ସେ କହିଲେ ମିସେସ୍ ପଟ୍ଟନାଏକ ସେ ଦିନ ଠିକ୍ କହୁଥିଲେ। ସେ କହୁଥିଲେ ସେମିତି କହିଲେ ହେବନି। ଆପଣ କହିବେ, ଆମେତ ମାତ୍ର ଦୁଇ ଜଣ। ଲୁଗା ପଟା ବାସନ କୁସନ ସେମିତି କିଛି ନାହିଁ। ଅଳ୍ପ କେଇ ଖଣ୍ଡ ମାତ୍ର। ଆଉ ତା ଛଡ଼ା ଲୁଗା ପଟାତ ଆମର ସବୁବେଳେ ଇସ୍ତ୍ରୀରେ ଦିଆଯାଏ। ସେ ଲୋକଟା ବି ଭଲ। ଲୋକ ପଠେଇ ନେଇ ଯାଏ, ପୁଣି ଆଣିଦେଇ ଯାଏ। ତେଣୁ ସେ ସମସ୍ୟା ଆମର ନାହିଁ କହିଲେ ଚଳେ। ବାକି ରହିଲା ବାସନ। କେଇ ଖଣ୍ଡ କହିଲ ? ଦିନରେ ଦି'ଖଣ୍ଡ। ସେଥିରେ ପୁଣି ଅଧିକାଂଶ ଦିନ ଆମର କ୍ଳବରେ ଡିନର ଥାଏ। କଅଣ ଆଉ କାମ ଯେ ! ହଁ, ଗୋଟିଏ କାମ ଆମର ଟିକିଏ ଭାରି। ସେ କଥା ମୁଁ ମାନୁଚି। ସେଇଟା ହେଲା ଘର ଝାଡୁ ଦେବା ଓ ପୋଛିବା।

ଟିକିଏ ରହି ସେ ପୁଣି କହିଲେ, ମୁଁ ସେଇଦିନୁ କହୁଚି ଆମର କଟକ ଘରଟାକୁ ଟିକିଏ ବଡ଼ କର। ଆଉ ଭୁବନେଶ୍ୱର ଘରଟାକୁ ଛୋଟ କର, ଆମେ ସେଇଠି ରହିବା। ଛୋଟ ଘରେ ଏତେ ପୋଛା ପୋଛିର ଦରକାର ପଡ଼େନି। ଭେକ୍ୟୁମ୍ କ୍ଳିନରରେ କାମ ଚଳେଇ ନେଇ ହୁଏ। ତମେତ ମୋ କଥା ମାନିଲନି। ଦି'ଟା ଯାକ ଏମିତି କଲ ଯେ ସମସ୍ତଙ୍କର ଚକ୍ଷୁ ଶୂଳତ ହେଲା। ଏବେ ଦେଖ। କୋଉ ଆୟା ଭଲା ରାଜି ହେବ ଏ ଘରଟାର ଝାଡୁ-ପୋଛା କରିବାକୁ ? ତଥାପି କହିଲି ଅନ୍ତତଃ ପୂର୍ବ ପାଖରେ ଚାରିଟା ରୁମକୁ ତାଲା ପକେଇ ଦିଅ। ନା, ତା'ବି ହବ ନାହିଁ। ଗୋଟିଏ ରିଡ଼ିଂ ରୁମ। ଗୋଟିଏ ଏକ୍ସ୍ଟ୍ରା ଗେଷ୍ଟ ରୁମ। ଗୋଟିଏ ଏକ୍ସ୍ଟ୍ରା ଲବି। ଆଉ ଗୋଟିଏ ଠାକୁର ମିଉଜିଅମ ଏ ସବୁ କରିବାର କିଛି ମାନେ ହୁଏ ?

ରିଟାୟାରମେଣ୍ଟ ପର ଠାରୁ ସବୁ ଦିନ ପରି ଉର୍ବଶୀ ସେ ଦିନ ମଧ୍ୟ ତାଙ୍କର ଏ ଅଭିଯୋଗ ଗୁଡ଼ିକ ଅନବରତ ଢାଳି ଚାଲି ଥିବାର ଦେଖି ମୁଁ ଟା କପ୍‌ଟି ଥୋଇ କହିଲି– ''ଷ୍ଟେରିଓଟିକୁ ଟିକେ ଖୋଲି ଦିଅ। ଟିକିଏ ଭଜନ ଶୁଣାଯାଉ।''

ସେ ଉଠି ଚାଲି ଗଲେ ତମ ତମ ହେଇ। ସେ ଉଠି ଚାଲି ଗଲା ପରେ ମଧ୍ୟ ମୁଁ ଠିକ୍ ଜାଣିଥିଲି ପାଞ୍ଚ ମିନିଟ ପରେ ଆଉ ଥରେ ଆସିବେ। ସେ ଏମିତି ଆସନ୍ତି ଓ ଯାଆନ୍ତି। ତେଣୁ ତାଙ୍କ ତମ ତମ ହେଇ ଚାଲି ଯିବାଟାକୁ ମୁଁ ବେଶି ଗୁରୁତ୍ୱ ଦେଉ ନ ଥିଲି।

ସେ ପୁଣି ଥରେ ଆସିଲେ ଏବଂ ମୋତେ ମୋଟେ ନ ଚାହିଁ ଅର୍ଥାତ ଅନ୍ୟ ଆଡ଼କୁ ଅନାଇ କହିଲେ ''ତମେ ଯାହା କରୁଚ କର, ମୁଁ ଆଉ ବେଶି

ଡେରି ଯାଏ ଅପେକ୍ଷା କରି ପାରବିନି। ନଚେତ୍ ମୁଁ କହି ଦଉଚି, ମୁଁ କାଲି ରାତିରେ ଟୁନା ସହିତ କଥା ହେଉଚି। ସେତ ମୋ ଆସିବାକୁ ଅପେକ୍ଷା କରି ବସିଚି। ସେ କହିଚି, ମୁଁ କହିବା ମାତ୍ରେ ସେ ଟିକଟ କାଟି ମୋ ପାଖକୁ ପଠାଇ ଦେବ। ମୁଁ ଚାଲିଯିବି। ମିସେସ୍ ରାଓ ଓ ମିସେସ୍ ଚୌଧୁରୀ ଏମାନେ ସମସ୍ତେ ଏଇ ସମୟରେ ଆମେରିକା ପଳେଇବେ ବୋଲି ସେମାନଙ୍କ ପୁଅମାନେ ଏଥିର ଟିକେଟ୍ ପଠେଇ ସାରିଲେଣି। ତେଣିକି ତୁମେ ତୁମ କଥା ବୁଝୁଥିବ।''

ମୁଁ ଅତ୍ୟନ୍ତ ବଶମ୍ବଦ ପରି କହିଲି ''ତୁମକୁ ପରା ମିସେସ୍ ପଟ୍ଟନାଏକ ଠିକ୍ କରି ଦେବେ ବୋଲି କହିଛନ୍ତି ?''

''ମିସେସ୍ ପଟ୍ଟନାଏକ କଅଣ ଠିକ୍ କରିବେ ମ ? ପଟ୍ଟନାଏକ ସାହେବ ବରଂ ନଜରରେ ରଖିଛନ୍ତି ବୋଲି ମୋତେ କହିଲେ। ଆଉ ପ୍ରକୃତରେ ତାଙ୍କରି ଦ୍ୱାରାହିଁ ହେଇ ପାରିବ। ତାଙ୍କରି ଫେକ୍ଟ୍ରିରେ ଯେଉଁମାନେ କାମ କରୁଛନ୍ତି ସେମାନଙ୍କୁ ସେ କୁଆଡ଼େ କହିଛନ୍ତି ଗୋଟିଏ ଠିକ୍ କରି ଦେବାକୁ।''

ମୁଁ କହିଲି ''ତା ହେଲେ ତ ଆଉ କିଛି ଚିନ୍ତା ନାହିଁ, ସେ ନିଶ୍ଚୟ ଭଲ ଲୋକଟିଏ ଯୋଗାଡ଼ କରିବେ।''

ଯା ଭିତରେ ବେଶ କେତେଟା ଦିନ ବିତି ଯାଇଚି। ମୋର ଆଉ ଆୟା ରଖିବା କଥା ମନେ ନ ଥାଏ କିମ୍ବା ମିସେସ୍ ପଟ୍ଟନାଏକଙ୍କର ସେ ବିଷୟରେ ପଚାରିବା କଥା ମଧ୍ୟ ମନେ ନ ଥାଏ। ଉର୍ବଶୀ ମଧ୍ୟ ମୋତେ ଆଉ ସେ କଥା କେବେ ମନେ ପକେଇ ଦେଇ ନାହାନ୍ତି।

କିନ୍ତୁ ଦିନେ ମର୍ଣିଂ ୱାକ୍‌ରୁ ଫେରି ଦେଖିଲି ଆମ ରୋଷେଇ ଘରେ ଗୋଟେ ମଧ୍ୟ ବୟସୀ ସ୍ତ୍ରୀ ଲୋକ ସହିତ ଉର୍ବଶୀ କଥାବାର୍ତ୍ତାରେ ବ୍ୟସ୍ତ। ମୋତେ ଦେଖି କହିଲେ, ''ତମେ ଟିକିଏ ବାଲକୋନିରେ ବସି ପେପର ଦେଖୁଥାଅ, ମୁଁ ଚା' କରୁଚି।''

ସ୍ତ୍ରୀ ଲୋକଟିର ମୁହଁ ଦେଖି ମୁଁ ଅନୁମାନ କରି ନେଲି ଯେ ସେ ଆୟା କାମ କରିବାକୁ ଆସିଚି। ସାଧାରଣ ଦେଖାରୁ ସ୍ତ୍ରୀ ଲୋକଟି ସ୍ମାର୍ଟ ହେଇଥିବ ବୋଲି ମୋର ମନେ ହେଲା। ଅନ୍ତତଃ ପକ୍ଷେ ସେ ଯେ ଆଗରୁ କେତେ ଜଣ ଅଫିସରଙ୍କ ଘରେ କାମ କରିଥିବ ଏହା ବୁଝା ପଡୁଥିଲା। କାରଣ ସେମାନଙ୍କ କଥୋପକଥନର କିଛି ଅଂଶ ମୋ କାନରେ ପଡ଼ିଥିଲା। ତା'ର କଥାବାର୍ତ୍ତାରୁ ସେ ବେଶ ମାର୍ଜିତ ଜଣା ପଡୁଥିଲା।

ମୁଁ ମନେ ମନେ ଭଗବାନଙ୍କୁ ଅଶେଷ ଧନ୍ୟବାଦ ଦେଇ ପକେଇଲି। ଯା' ହେଉ, ଆଉ ସକାଳୁ ଉଠି ଉର୍ବଶୀଙ୍କର କଳଗାଉଣା ଶୁଣିବାକୁ ପଡ଼ିବନି। ମଣିଷ ଟିକିଏ ଶାନ୍ତିରେ ନିଃଶ୍ୱାସ ମାରିବ।

ଅବସର ନେବାର ତିନିମାସ ହୋଇ ଗଲାଣି। ଭାବିଥିଲି ଅବସର ପରେ ଟିକିଏ ବିଶ୍ରାମ ନେବି। ପୂର୍ବ ଜନ୍ମର ପାପ ଫଳରୁ ହେଉ ବା ବାପ-ମା'ଙ୍କ ଅଭିଶାପ ବଳରୁ ହେଉ, ମିଳିଥିବା ପୁଲିସ ପଦବୀର ନାରକୀୟ ଜୀବନ-ଯନ୍ତ୍ରଣାରୁ ମୁକ୍ତି ପାଇବା ପାଇଁ ଶେଷ ଜୀବନରେ ଗୀତା, ଭାଗବତ, ରାମାୟଣ କିମ୍ବା କିଛି ନ ହେଲେ ଆଉ କିଛି ଭଲ ଭଲ ବହି ପଢ଼ି ସମୟ ବିତେଇବି ବୋଲି ଭାବିଥିଲି। ସେ ସବୁ ଏବେ ନିରାଶାରେ ପରିଣତ ହେବାକୁ ବସିଚି। ଆଉ କେହି କେହି ମିଷ୍ଟର ସ୍ୱାଇଁ କି ମିଷ୍ଟର ମିଶ୍ରଙ୍କ ପରି ଶେଷ ଜୀବନରେ ବସି ବସି କିଛି କବିତା ଲେଖିବାକୁ ଉପଦେଶ ଦେଇଥିଲେ। କବିତା ଲେଖିଲେ ଜୀବନର ସବୁ ଯନ୍ତ୍ରଣା କୁଆଡ଼େ ଭୁଲିଯାଇ ହୁଏ ବୋଲି ଏକାଡ଼େମୀ ଆୱାର୍ଡ଼ ପାଇଥିବା ପୂର୍ବତନ ରେଭେନ୍ୟୁ ସେକ୍ରେଟେରୀ ତଥା ରାଜ୍ୟ ଏଡୁକେଶନ ସେକ୍ରେଟେରୀ ଥିଲାବେଳେ ପ୍ରଗାଢ଼ ପରିଶ୍ରମ କରି ପି.ଏଚ.ଡ଼ି. ପାଇଥିବା ଡକ୍ଟର ଦାସ ସେଦିନ କହୁଥିଲେ। ତେଣୁ କଲେଜ ଜୀବନର ପୁରୁଣା ସନେଟ୍ ଖାତା ଖୋଜି ବାହର କରିବାକୁ ମୁଁ କେତେଥର ଚିନ୍ତା କଲିଣି। ଗତଥର ବୁକ୍ ଫେୟାର୍‌ରୁ ସେଥିପାଇଁ କିଛି ଭଞ୍ଜ ଓ ରାଧାନାଥଙ୍କ କାବ୍ୟ କବିତା ଆଣି ଏବେ ମଧ୍ୟ ମୁଁ ରିଡ଼ିଂ ରୁମ୍‌ର ଟେବୁଲ ଉପରେ ରଖିଛି। କିନ୍ତୁ ଉର୍ବଶୀଙ୍କ ଯୋଗୁଁ ମାନସିକ ଯନ୍ତ୍ରଣାରୁ ମୁକ୍ତି ମିଳିଲେତ ପଢ଼ିବି। ମୋର ବିଶେଷ ଅନୁଭବର କବିତା ଗୁଡ଼ିକ କୁଆଡ଼େ ଗୋଟାଏ ଗୋଟାଏ କ୍ଲାସିକ ବୋଲି ସେଦିନ ଗୋଟାଏ ମିଟିଂରେ ନାଁ ଭୁଲି ଯାଇଥିବା ଜଣେ ପ୍ରକାଶକ ମଧ୍ୟ କହୁଥିଲେ। ଏ କଥା ସେ କେମିତି ଜାଣିଲେ ବୋଲି ପଚାରିବାରୁ ଉର୍ବଶୀ ଉପରେ ପଡ଼ି କହିଲେ– ତମେ ତାଙ୍କୁ ଜାଣିନ କି ? ସେ ଆମ ଶଶୀର ସାଙ୍ଗ ପରା। ସେ ତୁମ କବିତା ଅନେକ ପଢ଼ିଚନ୍ତି।

ମୁଁ ଆଶ୍ଚର୍ଯ୍ୟ ହେଲି। ଶଶୀ ମୋ ସାନ ପୁଅ। ଏବେ ଏଇ ସହରକୁ ଇନ୍‌କମ୍ ଟେକ୍ସ ଅଫିସର ଭାବେ ବଦଳି ହୋଇ ଆସିଚି। ତା' ସହିତ ମୋ କବିତାରେ କ'ଣ ସମ୍ପର୍କ ବା ଥାଇପାରେ। କଥାଟା ଅଡୁଆ ଲାଗିବାରୁ ମୁଁ ନୀରବ ହୋଇଗଲି।

ପରେ ପୁଣି ଭାବିଲି, ଆରେ ଉର୍ବଶୀ ଯେମିତିକା ଲୋକ ଏବଂ ସେ ଯେମିତି ଅର୍ଥନୀତିର ଇଲାଷ୍ଟିକ୍ ଫିତାଟିକୁ ଦୁଇହାତରେ ପାରୁ ପର୍ଯ୍ୟନ୍ତ ଟାଣି ଲମ୍ୱେଇବାକୁ ଚେଷ୍ଟା କରନ୍ତି ଏବଂ ଯୋଉଥି ପାଇଁ ଖାସ୍ କରି ଆମ ଘରେ ଏ ଯାଏ କେହି କାମ କରବାକୁ ଭରସି ପାରନ୍ତି ନାହିଁ, ସେ ଯଦି ଫିତାକୁ ବେଶି ଟାଣି ଦିଅନ୍ତି, ତା' ହେଲେ କଥା ସଇଲା। ମୁଁ ଭାବୁଥିଲି ଯଦି ସ୍ତ୍ରୀ ଲୋକଟି ଭଲ କାମ ଜାଣିଥାଏ, ତେବେ ତା'ର ପଇସାପତ୍ର ଦିଗରେ ତାକୁ ଟିକିଏ ଲିବରେଲି ଦେଖିଲେ କ୍ଷତି କ'ଣ ? ତା' ଛଡ଼ା ଭଲ ଆୟାଟିଏ ପ୍ରତ୍ୟେକ ଫେମିଲିର ଗୋଟାଏ ଷ୍ଟେଟସ୍ ସିମ୍ୱଲ। ସାହେବୀ ଫେମିଲିରେ ଭଲ ଆୟାଟିଏ ହେବାକୁ ହେଲେ ସନ୍ଧ୍ୟାରେ ଗାର୍ଡ଼େନ ପାର୍ଟିରେ.

ବନ୍ଧୁ ମହଲରେ କିମ୍ବା ଫେମିଲି ଗେଟ୍-ଟୁ-ଗେଦାର ସମୟରେ ଡ୍ରିଙ୍କସ ସର୍ଭ କରି ପାରୁଥିବା ଏକାନ୍ତ ଆବଶ୍ୟକ। ଆମ ଓଡ଼ିଆ ପରିବାର ଏପରିକି ଏରିଷ୍ଟ୍ରୋକାଟ୍ ଫେମିଲିମାନେ ସେଇ ସାମାଜିକ ଚଳଣୀକୁ ଏ ଯାଏ ଆପଣେଇ ପାରି ନାହାନ୍ତି ବୋଲି ତ ପଛରେ ପଡ଼ି ରହିଛନ୍ତି।

ଭାଗ୍ୟରେ ଥିଲେ ଭଲ ଆୟାଟିଏ ମିଳେ। କିନ୍ତୁ ବାରଗେନିଂ ସମୟରେ ଉର୍ବଶୀ ମୁଣ୍ଡରେ ଯେ ଏ ସବୁ କଥା ପଶୁଥିବ, ଏଥିରେ ମୋର ସନ୍ଦେହ ଜାତ ହେଉଥିଲା। ଭଲ ଶ୍ରମିକଟିଏ ଭଲ ପଇସା ବା ଆନୁଷଙ୍ଗିକ ସୁବିଧା ସୁଯୋଗ ଦାବୀ କରିବା ସ୍ୱାଭାବିକ। କିନ୍ତୁ ଉର୍ବଶୀ ସବୁବେଳେ ସେମାନଙ୍କୁ ଲେମ୍ବୁ ମନେକରି ଚିପୁଡ଼ି ଦିଅନ୍ତି।

ସେମାନଙ୍କ କଥାକୁ ମୋର ବାହାରୁ ରହି ଶୁଣିବାକୁ ଖୁବ୍ ଇଚ୍ଛା ହେଉଥିଲା। ତେଣୁ ବାଲ୍‌କନୀରେ ନ ବସି ଡାଇନିଂ ରୁମ୍‌ରେ ଯାଇ ବସିବାକୁ ମନ କଲି। କିନ୍ତୁ କାଳେ ଉର୍ବଶୀ ଭାବିବେ ମୁଁ ତାଙ୍କ କଥା ଓଭର ହିଅର କରୁଚି ଏବଂ ତାଙ୍କ ଶାସନର ସୀମାରେଖା ଭିତରେ ଅନଧିକାର ପ୍ରବେଶ କରିବାକୁ ଚେଷ୍ଟା କରୁଚି, ସେ ଭୟରେ ମୁଁ ଡାଇନିଂ ରୁମ୍ ପାଖକୁ ଡରି ଡରି ଗଲି। କିନ୍ତୁ କି ଆଶ୍ଚର୍ଯ୍ୟ। ଦେଖିଲି କିଚେନର ଦରଜା ଭିତରପଟୁ ବନ୍ଦ।

କ'ଣ ତା' ମାନେ ହୋଇପାରେ ?

ତା'ର ମାନେ ଏତିକି ଯେ, ଉର୍ବଶୀ କହୁଚନ୍ତି, ହେ ପତି ପୁଙ୍ଗବ, ତୁମେ ହୁଏତ ଏକଦା ୟୁନିଭରସିଟିରୁ ଭଲ ସାର୍ଟିଫିକେଟ୍‌ଟିଏ ନେଇ ଭାରତ ସରକାରଙ୍କ ସେବା ପଦକ ପାଇ ନିଜକୁ ଜଣେ ଟାଣୁଆ ପୁଲିସ ଅଫିସର ଭାବେ ସାବ୍ୟସ୍ତ କରିବାକୁ ଯାଇ ରାଜ୍ୟର ସବୁ ପୁଲିସ୍‌କୁ ନିଜର ସଟ୍ ଲାଠି ସାହାଯ୍ୟରେ ମେଣ୍ଢାପରି ମଣି କୃତିତ୍ୱ ଦେଖାଇ ଥାଇ ପାର, କିନ୍ତୁ ଆଜି ତୁମେ ମୋ ସାମ୍ନାରେ ସାମାନ୍ୟ ମେଣ୍ଢା ଶାବକଟିଏ। ତୁମକୁ ମୁଁ କେବଳ ଅଂଗୁଳି ଦେଖେଇ ମଣେଇ ପାରିବି। ସଟ୍ ଲାଠିର ଆବଶ୍ୟକତା ନାହିଁ। ତେଣୁ ତୁମେ ଭେଁ ଭେଁ କଲେ ସେଇ ବାହାରପଟେ କରୁଥାଅ। ମୋ ଏରିଆର ପବନଟିଏ ମଧ୍ୟ ମୋର ବିନା ଅନୁମତିରେ ତୁମ ପାଖକୁ ଯିବ ନାହିଁ।

ରୋଷେଇ ଘରର କବାଟ ଫିଟି ଗଲା। ଆହା, ସତେ ଯେମିତି ଜଗତର ନାଥ ଜଗନ୍ନାଥଙ୍କର ମଣୋହି ପରେ ସିଂହ ଦରଜା ଫିଟି ଯାଉଚି। ଆଉ ସାମନାରେ ହଜାର ହଜାର ଦର୍ଶନାର୍ଥୀ ବାହୁ ଟେକି ନିଜକୁ ସଂପୂର୍ଣ୍ଣ ସମର୍ପଣ ଭଙ୍ଗୀରେ ଅନେଇ ରହିଛନ୍ତି।

ସେ ହସୁଥିଲେ। ତାଙ୍କ ମୁହଁ ବେଶ୍ ପ୍ରସନ୍ନ ଦେଖା ଯାଉଥିଲା। ମନେ ହେଉଥିଲା ତାଙ୍କ ଗୋରା ଟକ୍ ଟକ୍ ଗୋଲ୍ ମୁହଁଟା ଏଇ ମାତ୍ର କିଛି ସମୟ ହେଲା ତାଙ୍କ ବୟସର କମ୍‌ସେ କମ୍ କୋଡ଼ିଏଟା ପାହାଚରୁ ତଳକୁ ଖସି ପଡ଼ିଛି।

ଗତ କାଲି ରାତିରେ କ୍ଲବ ଗଲାବେଳେ ବୋଳିଥିବା ଲିପ୍‌ଷ୍ଟିକର ପ୍ରଲେପଟା ମଉଳିବା ପରିବର୍ତ୍ତେ ଯେମିତି ଆହୁରି ଚମକି ଉଠୁଚି ଏବଂ ଏବେ ଏବେ ସସ୍ମିତା ସେନଙ୍କର ଡିବୋନେଅର୍‌ରେ ଉଠିଥିବା ମୁକୁଟ ମଣ୍ଡିତ ମୁଖଭଙ୍ଗୀ ପରି ଉର୍ବଶୀଙ୍କ ଓଠ ଅଳ୍ପ ମେଲି ଥିଲା, କିନ୍ତୁ ଅନେକ କଥାର ଇଂଗିତ ଦେଉଥିଲା ।

ମୁଁ ଖୁସି ହୋଇଗଲି । ଇନ୍ଦିରା ଗାନ୍ଧୀ ବାଂଲାଦେଶ ବିରୁଦ୍ଧରେ ଯୁଦ୍ଧ ଜୟ କରି କିମ୍ବା ଲାଲ ବାହାଦୂର ଶାସ୍ତ୍ରୀ ପାକିସ୍ତାନ ବିରୁଦ୍ଧରେ ଯୁଦ୍ଧ ଜିଣି ଯେମିତି ଉଲ୍ଲସିତ ହୋଇଥିବେ, ମୋର ମନେ ହେଉଥିଲା ଉର୍ବଶୀ ତା' ଅପେକ୍ଷା ଆହୁରି ବେଶି ଖୁସି ଏବଂ ଗରବିଣୀ ଦେଖା ଯାଉଛନ୍ତି ।

ସ୍ତ୍ରୀ ଲୋକଟିକୁ ଗେଟ୍ ପାଖରେ ବାଟେଇ ଦେଇ ଆସି ସେ ମୋତେ କହିଲେ– "ପ୍ଲିଜ୍, ଆଉ ଟିକିଏ । ମୁଁ ଏଇନେ ଚା' ନୁହେଁ କଫି ନେଇ ଆସୁଚି" । ମାତ୍ର କେଇଟା ମିନିଟ ଭିତରେ ସେ ଦୁଇ କପ୍ କଫି ନେଇ ଆସିଲେ । ଟ୍ରେ ଟା ସେଣ୍ଟର ଟେବୁଲରେ ଥୋଇ ଦେଇ ମୋ ହାତକୁ ଗୋଟିଏ କପ୍ ବଢ଼େଇ ଦେଲେ ଏବଂ କହିଲେ – "ଦେଖିଲ ଚିନି ବେଶି ହେଇ ଗଲା କି ?"

ମୁଁ କପ୍‌ଟା ହାତରେ ଧରୁ ଧରୁ କହିଲି– "ବେଶି ଖୁସି ହୋଇଗଲ ବୋଧହୁଏ ।"

ସେ ହସିଦେଲେ । ପ୍ରସ୍ଫୁଟିତ ପଦ୍ମ ଫୁଲଟି ପରି ତାଙ୍କ ଓଠରେ ହସର ପାଖୁଡ଼ାମାନେ ଆନନ୍ଦରେ ବିଛାଡ଼ି ହେଇ ପଡ଼ିଲେ ।

"ସବୁ ଠିକ୍ ହୋଇଗଲା ।" ସେ କଫିରୁ ଗୋଟାଏ ସୁଡୁକା ଟାଣି କହିଲେ ।

"କ'ଣ ଠିକ୍ ହେଲା ?" ମୁଁ ପଚାରିଲି ।

"ସେ ସବୁ କାମ କରିବ । ସବୁ କାମ ମଧ୍ୟ ଜାଣେ । ସେଇ ଯୋଉ ରିଟାୟାର୍ଡ଼ ଚିଫ୍ ଇଂଜିନିଅର ନାହାନ୍ତି ? ତାଙ୍କରି ଘରେ ଏବେ କାମ କରୁଚି । କିନ୍ତୁ ତା ପୂର୍ବରୁ ସେ ବହୁ ଅଫିସରଙ୍କ ଘରେ ମଧ୍ୟ କାମ କରିଚି । ଆମ ଘର ପାଇଁ ଏକଦମ୍ ଉପଯୁକ୍ତ । ମାଇକ୍ରୋ ଓଭେନ୍ ଅପରେସନ୍ ଠାରୁ ଆରମ୍ଭ କରି ଭେକ୍ୟୁମ କ୍ଲିନର୍ ଯାଏ କାମ ଜାଣେ । ସେ ତାକୁ କେତେ ଦେଉଥିଲେ ଜାଣ ? ପାଞ୍ଚ ଶହ ଟଙ୍କା ।"

ପାଞ୍ଚଶହ ଟଙ୍କା କଥା ଶୁଣି କଫି କପ୍‌ଟା ମୋ ହାତରୁ ଆଉ ଉପରକୁ ଉଠିଲାନି । ଶଙ୍କିତ ହୋଇ ପଚାରିଲି "ତମେ ଶେଷରେ କେତେରେ ତୁଟେଇଲ ?"

"କେତେ ହେଇଥିବ ଅନୁମାନ କରୁଚ ?" ତାଙ୍କ ମୁହଁରେ ସେଇ ବିଜୟ ଅହଂକାର ମଖା ପରମତୃପ୍ତିର ଚିରନ୍ତନ ହସ ସେମିତି ଝୁଲି ରହିଥିଲା ।

"ସେ ସବୁ ମୋ ଚିନ୍ତାର ବାହାରେ ।" ମନେ ମନେ ଭାବିଲି ନାରୀମାନଙ୍କୁ ସ୍ୱୟଂ ଭଗବାନ ମଧ୍ୟ ପ୍ରେଡ଼ିକ୍ଟ କରି ପାରି ନାହାନ୍ତି । ତା ଛଡ଼ା ନାରୀମାନଙ୍କ କେପେବିଲିଟି କିଏବା କଳି ପାରିବ ? ଜାତୀୟ ଏମାରଜେନ୍‌ସି ସମୟରେ ଦେଶର ବିଶାଳ ବିରୋଧୀ ଦଳ ଏବଂ ଏପରିକି ସମଗ୍ର ଦେଶ ମଧ୍ୟ ଇନ୍ଦିରାଙ୍କ କେପେବିଲିଟିକୁ

ଆସେସ୍ କରି ପାରି ନ ଥିଲେ। ମୁଁ ତ ଛାର। ଉର୍ବଶୀ ମୋର ବହୁ ଉପରେ, ତାଙ୍କୁ କଳିବା ମୋ ପକ୍ଷେ ସମ୍ଭବ ନଥିଲା।

ସେ କହିଲେ, "ମାତ୍ର ତିନି ଶହ ଟଂକା। କିନ୍ତୁ କଥା ହେଉଚି, ସେ ଆମ ଘରେ ସ୍ଥାୟୀ ଭାବରେ ରହିବ ଏବଂ ଆମର ସେଇ ସରଭେଣ୍ଟସ୍ କ୍ୱାଟର୍ସରେ ହିଁ ରହିବ।"

"ଆମ ସରଭେଣ୍ଟସ୍ କ୍ୱାଟର୍ସ?" ମୁଁ ଆଶ୍ଚର୍ଯ୍ୟ ହେଲି। "ଆରେ ସେ ଭଂଗା ଘରଟାରେ ପାଣି ବିଜୁଳି ନାହିଁ, ସେଠି ସେ କେମିତି ରହିବ? ଆଉ ତା'ଛଡ଼ା ସେ ତମକୁ ୨୪ ଘଣ୍ଟା ସର୍ଭିସ୍ ଦେବ, ଅଥଚ ତମେ ତାକୁ ......।"

"ଆଃ, ଆମ ଘରେ ଆଉ କ'ଣ କାମ ଯେ? ଆଉ ତା'ଛଡ଼ା ତା'ର ବିପଦ ବେଳେ ମୁଁ ଯେତେବେଳେ ତାକୁ ଘରଟିଏ ଦେଇ ସହାୟ ହେଉଚି, ସେ ଆଉ ମୋ ପାଇଁ ୨୪ ଘଣ୍ଟା କାମ କରନ୍ତାନି କି? ସମସ୍ତେ ପଇସା ଦେବେ। କିନ୍ତୁ ରହିବାକୁ ଘର କିଏ ଦେବ?"

"ସେ ସେଥିରେ ରାଜି ହେଲା?" ମୁଁ ଆଶ୍ଚର୍ଯ୍ୟ ହେଇ ପଚାରିଲି।

ଟେଲିଫୋନ୍‌ର ଘଣ୍ଟି ବାଜିଲା। ସେ ଉଠିଗଲେ। ବିଗଳିତ ହୋଇ ଫୋନ୍‌ରେ କହିଲେ, "ବହୁତ ଧନ୍ୟବାଦ ମିସେସ୍ ରାଓ। ସବୁ ଠିକ୍ ହେଇଗଲା। ରାଓ ସାହେବଙ୍କୁ ମୋର କୃତଜ୍ଞତା ଜଣାଇ ଦେବେ।"

ହସି ହସି ସେ ଫେରି ଆସିଲେ, ଚେଆରରେ ବସି ପଡ଼ି ପଚାରିଲେ, "କିଛି ବୁଝି ପାରିଲ?"

ମୁଁ କହିଲି "ମିସେସ୍ ରାଓ? ତମ ଲେଡ଼ିଜ୍ କ୍ଲବ ସେକ୍ରେଟେରୀତ? ଇଷ୍ଟେଟ୍ ଅଫିସର ମିଷ୍ଟର ରାଓଙ୍କ ସ୍ତ୍ରୀ?"

ସେ କହିଲେ– "ହଁ, ସେ ତ ଝୁମ୍ପୁଡ଼ିରେ ରହୁଥିଲା। ଝୁମ୍ପୁଡ଼ି ଗୁଡ଼ାକୁ ସରକାର ଭାଙ୍ଗନ୍ତେ ନାହିଁ କି? ସହରର ପରିମଳ ପାଇଁ ସେ ସବୁ ଏକାନ୍ତ ଆବଶ୍ୟକ। ଆଜି ମିସେସ୍ ଓ ମିଷ୍ଟର ରାଓଙ୍କ ପାଇଁ ପାର୍ଟିର ବ୍ୟବସ୍ଥା କରିବାକୁ ହେବ।"

ଅଂକର ଯୋଗ ବିୟୋଗ ଗୁଡ଼ାକତ ସବୁବେଳେ ମୋ ପାଇଁ ଗୋଟାଏ ଅଛିଣ୍ଡା ପ୍ରଶ୍ନ। ମୁଁ ତାଙ୍କ ମୁହଁକୁ ହାଁ କରି ଅନେଇ ରହିଲି। ଆଉ ସେ ସେମିତି ମୁରୁକି ମୁରୁକି ହସୁଥିଲେ।



(ନବପତ୍ର, ଜୁଲାଇ-ଅଗଷ୍ଟ, ୧୯୯୬)

# କଇଁଛ

ଜୀବନ ଘର ଭିତରକୁ ପଶି ଆସିଲା ଏବଂ ଥମକି ଛିଡ଼ା ହେଇଗଲା । ଘରର ଝରକାଗୁଡ଼ିକ ଖୋଲା ଥିଲା ଏବଂ ସେ ଝରକା ଦେଇ ପର୍ଯ୍ୟାପ୍ତ ଆଲୋକ ଭିତରକୁ ପଶି ଆସୁଥିଲେ । କାହିଁକି କେଜାଣି ସେ କୋଠରୀ ଭିତରେ ଥିବା ଆଲୋକଗୁଡ଼ିକୁ ମୋଟେ ସହ୍ୟ କରି ପାରୁ ନ ଥିଲା । ସେ ଭାବୁଥିଲା ଏଠି ମୋଟେ ଆଲୋକ ନ ଥାଆନ୍ତା କି, ଝରକା କବାଟ ସବୁ ବନ୍ଦ ହେଇ ଥାଆନ୍ତା କି । ଆଲୋକମାନେ ଏ ଘରର ସୀମା ଡେଇଁ ସେ ପାଖକୁ ପଳାନ୍ତେ କି । ସେମାନଙ୍କୁ କେହି ତଡ଼ି ଦେଇ ପାରନ୍ତା କି ।

ଜୀବନ ଚାରିଆଡ଼କୁ ଦେଖିଲା । ଝରକା ସେପାଖ ରାସ୍ତାରେ ଲୋକମାନେ ଯିବା ଆସିବା କରୁଥିଲେ । ସେମାନଙ୍କ ଭିତରୁ କେହି କେହି ଖୋଲା ଝରକା ଆଡ଼କୁ ଦେଖୁଥିଲେ । ସେ ଝରକା ପାଖରେ ଆସି ଠିଆ ହେବାରୁ ତା ଦେହରେ ମୁଠାଏ ସୂର୍ଯ୍ୟାଲୋକ ତାକୁ ଗାଧୋଇ ଦେଲା । ହଠାତ୍ ଗୋଟାଏ ଅବ୍ୟକ୍ତ ଚିତ୍କାର କରି ଜୀବନ ପଛକୁ ଘୁଞ୍ଚିଗଲା ।

ଆଃ କେତେ ଯନ୍ତ୍ରଣା ଦାୟକ ଏ ଆଲୋକଗୁଡ଼ାକ । ଆଲୋକର ଅଶେଷ ଯନ୍ତ୍ରଣାର ତୀକ୍ଷ୍ଣ କଣ୍ଟାଗୁଡ଼ାକ ଯେମିତି ତାକୁ ଚାରି ପାଖରୁ ଘେରି ଆକ୍ରମଣ କରିବାକୁ ଚେଷ୍ଟା କରୁଥିଲେ, ଏବଂ ଜୀବନ ସେଥିରୁ ମୁକ୍ତି ପାଇବା ପାଇଁ ପ୍ରାଣପଣେ ଚେଷ୍ଟା କରୁଥିଲା । ସେ ଛାଟି ପିଟି ହେଉଥିଲା ଏକ ଅସହ୍ୟ ଯନ୍ତ୍ରଣାରେ ।

ଏଥର ଜୀବନ ନିଜ ଦେହକୁ ଦେଖିଲା । ସେ ଦେଖିଲା ଯେମିତି ଦିନର ଆଲୋକମାନେ ତା ଦେହରେ ଜୋକ ପରି ଚଢ଼ି ଯାଇ ସାଲୁବାଲୁ ହେଉଛନ୍ତି ଏବଂ ତା ଶରୀରର ରକ୍ତ କୋଷଗୁଡ଼ିକୁ ଶୋଷି ପକାଉଛନ୍ତି । ତା ଆଖି ସାମନାରେ ଏ ସବୁ ଘଟି ଯାଉଥିଲେ ମଧ୍ୟ ସେ ଆକ୍ରମଣ ଜନିତ ଯନ୍ତ୍ରଣାରୁ ନିଜକୁ ରକ୍ଷା କରି ପାରୁ ନଥିଲା ।

ଜୀବନ ସେଦିନ କାହିଁକି କେଜାଣି ଆଲୋକକୁ ଭୟ କରୁଥିଲା । ଆଲୋକର ପ୍ରଚଣ୍ଡ ତୀବ୍ରତା ତାକୁ ଯେମିତି ମାରି ଗୋଡ଼ାଉଥିଲା ।

ସେ ଭାବି ପାରୁ ନ ଥିଲା ସେ ସେଥିରୁ କେମିତି ମୁକ୍ତି ପାଇବ । କେମିତି ସେ ନିଜକୁ ବଞ୍ଚାଇ ପାରିବ । ଆଲୋକର ସାମନା ସାମନି ହେବାକୁ ତାର ଯେଉଁ ଶକ୍ତି ଦରକାର, ଯେଉଁ ମାନସିକତା ଆବଶ୍ୟକ ସେତକ ତା'ଠାରେ ନ ଥିବା...

ସେ ନିଜକୁ ଗୋଟାଏ ଅଜଣା ଜଇଁଛର ଶକ୍ତ ଖୋଳପା ଭିତରେ ଲୁଚେଇ ରଖିବାକୁ ଚାହୁଁଥିଲା। ସେ ଦେଖୁଥିଲା, ଆଲୋକମାନେ ଆସ୍ତେ ଆସ୍ତେ ଜୀବନକୁ ଜୀବନବିହୀନ କରି ପକାଉଚନ୍ତି। ସେ ଚେଆରରୁ ଉଠି ପଡ଼ିଲା ଏବଂ ଧଡ଼ଧାଡ଼ କରି ଝରକାଗୁଡ଼ାକୁ ବନ୍ଦ କରି ଦେଲା।

କିନ୍ତୁ ଆଲୋକର ଗତିକୁ ବା ରୋଧିବ କିଏ? ତାର ଗତିତ ସବୁବେଳେ ଦୁର୍ବାର। ତାର ବେଗ, ତାର କ୍ଷୀପ୍ରତା ଅପରିସୀମ। ଅନ୍ଧକାର ବିରୁଦ୍ଧରେ ଆଲୋକର ଜୟ ଯାତ୍ରା ମଣିଷ ଯୁଗେ ଯୁଗେ ଦେଖି ଆସିଚି। ତେଣୁ ଜୀବନ ଝରକା ବନ୍ଦ କରି ଦେଇ ଚାରିଆଡ଼େ ମୋଟା ପରଦାରେ ଢ଼ାଙ୍କି ଦେଲେ ମଧ୍ୟ ଆଲୋକର ଗତିକୁ ରୋକି ପାରିଲାନି। ଝରକାର କ୍ଷୁଦ୍ରାତିକ୍ଷୁଦ୍ର ରନ୍ଧ୍ର ବାଟେ, ଛୋଟ ଛୋଟ ଫାଙ୍କ ବାଟେ ଆଲୋକମାନେ ପୂର୍ବ ପରି କୋଠରୀ ଭିତରକୁ ଆସିବାକୁ ଲାଗିଲେ ଏବଂ ନିଜର ଅସ୍ତିତ୍ୱକୁ ଜୋର ଜବରଦସ୍ତି ଜାହିର କରିବାକୁ ଲାଗିଲେ।

ଜୀବନକୁ ସେ ଦିନ ବଡ଼ ହାଲିଆ ଲାଗୁଥିଲା। ସେ ଭାବୁଥିଲା ଏଇ ସମୟଟାରେ ସେ ଘରକୁ କେହି ନ ଆସନ୍ତା କି କେହି ତାକୁ ନ ଦେଖନ୍ତା କି। କେହି ମଧ୍ୟ ତାକୁ ନ ଖୋଜନ୍ତା। ତା ସହିତ କେହି କଥା ହେବାକୁ ନ ଆସନ୍ତା କି, କେହି ତାକୁ ମନେ ମଧ୍ୟ ନ ପକାନ୍ତେ। କେହି ତାକୁ ଲୋଡ଼ୁ ନ ଥାଆନ୍ତେ କି। ଏଇ ମୁହୂର୍ତ୍ତରେ ସେ କାହିଁକି କେଜାଣି କାହାକୁ ଦେଖା କରିବାକୁ ମୋଟେ ଚାହୁଁ ନ ଥିଲା।

ଆରେ, କିଏ ବା ତାକୁ ଖୋଜିବ? କାହିଁକି ଖୋଜିବ? ତା'ଠି କଅଣ ଅଛି ଯେ? ତାକୁ ଏ ସହରରେ, ଏ ସାହିରେ କେତେଜଣ ଜାଣନ୍ତି ଯେ? ଏଇ ଘରେ ମଧ୍ୟ ତା'ଠି କାହାର କି କାମ ଥାଇପାରେ ଯେ ତାକୁ ଖୋଜି ପକେଇବ? ସେ ବା କାହାର କୋଉ କାମରେ ଲାଗୁଚି? ଲାଗିପାରେ, ସେମିତିକା ସମ୍ଭାବନା ମଧ୍ୟ ନାହିଁ ବା ନଥିଲା। ତେଣୁ ସେ ସବୁବେଳେ ଅଲୋଡ଼ା।

ତଥାପି କିଏ ହୁଏତ ଘର ଭିତରକୁ ଆସି ଯାଇ ପାରେ। ଜଣେ ଯେତେବେଳେ ଆଉ କୋଉଠି ନାହିଁ, ହୁଏତ ଏଇ କୋଠରୀରେ ଥାଇ ପାରେ। ଏମିତି ଗୋଟାଏ ଅନାବଶ୍ୟକ ଭାବନା ନେଇ କେହି ହୁଏତ ଏ ଆଡ଼କୁ ଆସିଯାଇ ପାରେ। ଏ ନିର୍ଜନତା ରାଜୁତି କରୁଥିବା କୋଠରୀରେ ଜୀବନକୁ ଦେଖି ସେ ହୁଏତ ଆଶ୍ଚର୍ଯ୍ୟ ହେଇଯାଇ ପାରେ। ବିସ୍ମୟ ବିସ୍ଫାରିତ ଆଖିରେ ସେ ତାକୁ ଦେଖି ଅନେକଗୁଡ଼ିଏ ଅସମାହିତ ସମସ୍ୟାର ଅତୁଆ ପ୍ରଶ୍ନ ତା ଉପରକୁ ଫୋପାଡ଼ି ଦେଇ ପାରେ। ପ୍ରଶ୍ନର ଜାଲରେ ତାକୁ ବାନ୍ଧି ଦେଇପାରେ।

ସେମିତି କେବଳ ଜଣେ କରିପାରେ। ଏ ଘରେ, ଏ ପରିବାରରେ, ଏ ସାହି ବସ୍ତିରେ ଏପରିକି ଏ ସମଗ୍ର ସହରରେ, କେବଳ ଜଣେ ତାକୁ ଖୋଜିପାରେ।

ଲୋଡ଼ି ପାରେ। ପ୍ରଶ୍ନ ପଚାରି ପାରେ, ଏବଂ ତାର ସମସ୍ତ ଅନୁଶାସନିକ ଶବ୍ଦର ସମ୍ଭାର ଭିତରେ ତାକୁ ସମ୍ମୋହିତ କରି ଦେଇପାରେ। ସେଇ କେବଳ ଜଣେ ଯେ ତା ପାଇଁ କ୍ରୋଧ କରିପାରେ, ରାଗ ଅଭିମାନ କରିପାରେ, ଆଖିରୁ ଲୁହ ଝରେଇ ପାରେ ଏବଂ ତା ପର ମୁହୂର୍ତ୍ତରେ ତାର ସମସ୍ତ ଆକର୍ଷିବାପଣ ଭିତରେ ଆବଦ୍ଧ କରି ରଖି ଦେଇ ନିମିଷକେ ଅଦୃଶ୍ୟ ମଧ୍ୟ ହେଇ ଯାଇ ପାରେ। ତାପରେ ହୁଏତ ତିନି ଚାରିଦିନ କିମ୍ବା ତିନି ଚାରି ମାସ ଯାଏ ଉଭାନ ମଧ୍ୟ ହେଇ ଯାଇ ପାରେ।

ସେ କିନ୍ତୁ ଆଜି ନାହିଁ। ସହର ବାହାରକୁ ଯାଇଚି। ଖୁବ୍ ଶୀଘ୍ର ଫେରିବ ବୋଲି କହି ଯାଇଚି। ନ ଆସିବି ପାରେ। କାହିଁକି ଆସିବ ଯେ? ଗୋଟାଏ ଅନିର୍ଦ୍ଦିଷ୍ଟକାଳ ଯାଏ ସେ ମୋ ପଛରେ ଚାଲିଥିବ, ଦୂରତ୍ୱ ମାପୁଥିବ, ଦୂରତ୍ୱର ବ୍ୟବଧାନକୁ ସଜାଡ଼ି ଧରୁଥିବ ଏବଂ ପଚାରୁଥିବ "ଆଉ କେତେକାଳ ଏମିତି ଚାଲୁଥିବି, ହେ ଧ୍ରୁବତାରା?"

ହଁ ଏମିତି ସେ କହେ। "ତମେ ମୋତେ ଦେଖୁ ନଥିବ। ଥରେ ବୋଲି ପଛରେ କିଏ ଅଛି କି ନା ଦେଖୁ ନଥିବ। ଅଥଚ ମୁଁ ଏକାନ୍ତ କଶମୃଦ ପରି, ଏକମୁହାଁ ହେଇ, ପାଇବାର ସବୁ ଆଶାକୁ ପଣତରେ ଗଣ୍ଠି ବାନ୍ଧି ଚାଲିଥିବି, ଧୂମାଳ ଆକାଶର ତାରା ଖୋଜି ଖୋଜି ଦିଗରୁ ଦିଗନ୍ତକୁ, ଆକାଶରୁ ପାତାଳକୁ, ଜନ୍ମରୁ ଜନ୍ମାନ୍ତରକୁ? କେତେକାଳ ଏମିତି ଆଖି ବନ୍ଦକରି ବାଟ ଚାଲୁଥିବି?"

ଏସବୁ ପ୍ରଶ୍ନର ଉତ୍ତର ଏଯାଏ ସେ ପାଇନାହିଁ, ପାଇବାର ଆଶାଟା ବୋଧେ, ଏବେ ତାର ମଉଳି ଆସୁଥିବ। ଆଖି ଠାରୁ ବସ୍ତୁ ଯେତିକି ଦୂରେଇ ଯାଏ ସେତିକି ତାର ଆକାର ଆସ୍ତେ ଆସ୍ତେ ଛୋଟ ହେଇ ଶେଷରେ ବିନ୍ଦୁରେ ପରିଣତ ହୁଏ। ତା' ପରର ଅବସ୍ଥା ଶୂନ୍ୟତା। ସେତେବେଳେ ଆଉ କିଛି ମିଳେନା। ସେତେବେଳେ ଦେଖିବାର ମଧ୍ୟ କିଛି ଥାଏ ନା। ଯାହା ଥାଏ ତାକୁ ଦେଖି ହୁଏନା।

ସେଇ କିଛି ନ ପାଇ ଅନେକ ଖୋଜୁଥିବା ବସ୍ତୁଟି ଆଖିରେ ଜୀବନ ଏବେବି ଅପ୍ରାପ୍ତ ଫୁଲକଟିଏ ହେଇ ରହି ଯାଇଚି। ତାର ମନେ ପଡ଼ୁଚି। କେହି ଜଣେ ହୁଏତ କହିଥିଲେ, "ଖୋଜିବାରେ ଯେତିକି ଆନନ୍ଦ, ପାଇବାରେ ସେତକ ନଥାଏ।"

ହେଇତ ସେ ଦିନ। ସେମାନେ ଦୁହେଁ ବସିଥିଲେ ସେ କୋଠରୀ ଭିତରେ ପାଖାପାଖି ଦୁଇଟା ଚେଆରରେ। ଘରେ ଆଉ କେହି ନଥିଲେ। ସଂଜ ହେଇ ଅଂଧାରଟା ଆସ୍ତେ ଆସ୍ତେ ବହଳ ହେଇ ଆସିଲା। ତଥାପି ସେମାନଙ୍କର ମନେ ନାହିଁ ଯେ ଅଂଧାରଟା କେତେ ବେଳୁ ସେଠି ତାର ସିଂହାସନ ପକେଇ ସାରିଲେଣି। ସେ ଅନ୍ଧାର ଭିତରେ ଜୀବନ ଓ ସେ। ସେମାନେ କେହି କାହାକୁ ଦେଖୁ ନ ଥିଲେ। କେହି କାହାକୁ ମଧ୍ୟ କିଛି ଶୁଣୁ ନଥିଲେ। କେମିତି ଗୋଟାଏ ନିଝବ ନିଥର ସମୟଟାରେ ସେ ଦୁହେଁ ଦୁହିଁଙ୍କର ଉପସ୍ଥିତି ହିଁ କେବଳ ଅନୁଭବ କରୁଥିଲେ।

ଅନେକ ସମୟ ଏମିତି ବିତିଗଲା ପରେ ଜୀବନ ହୁଏତ କେହି ଜଣେ କହୁ ଥିବାର ଶୁଣିଲା "ସୁଇଚଟା ଦେଇ ଦେବି ?"

"ଦିଆ ହେଇନି ?"

ତାର ତିନି ଚାରି ଦିନ ପର ପର୍ଯ୍ୟନ୍ତ ସେ ଆଉ ଆସି ନଥିଲା । ସେ କାହିଁକି ଆସି ନଥିଲା । କାହିଁକି ଆସି ଥାଆନ୍ତା ? ଜୀବନ ଏ ଦୁଇଟି ପ୍ରଶ୍ନର ଉତ୍ତର ଆଜି ବି ଖୋଜି ପାଏନା ।

କବାଟରେ କାହାର ହାତର ଶବ୍ଦ । "ଜୀବନ ଅଛି ? ଜୀବନ ?"

ଜୀବନ ଚମକି ପଡ଼ିଲା । ସେ ଭୂତ ଦେଖିଲା କି ? ଜୀବନ ଅଛି ? ସତରେ କଅଣ ତା'ଠି ଜୀବନ ଅଛି ? କାହିଁ ? କୋଉଠି ସେ ଜୀବନ ? ଆଲୋକରେ ନା ଅନ୍ଧାରରେ ? ଦିବାଲୋକରେ ନା ଚନ୍ଦ୍ରାଲୋକରେ ? ସ୍ୱର୍ଗରେ ନା ମର୍ତ୍ତ୍ୟରେ ?

ଜୀବନ ଏ ଯାଏ ଜାଣି ନାହିଁ ଜୀବନର ସଂଜ୍ଞା, ତାର ଆକୃତି, ତାର ରୂପ, ରସ ଓ ଗନ୍ଧ । ସେ ସେ ସବୁ ବିଷୟରେ କିଛି ଜାଣି ନ ଥିଲା ବେଳେ କି ଉତ୍ତର ଦେବ ? ଏ ପ୍ରଶ୍ନର ଉତ୍ତରକୁ ଖାଲି ଗୋଟାଏ ଛୋଟ ହଁ କି ନାଁ ରେ ସୀମାବଦ୍ଧ କରି ରଖା ଯାଇ ପାରେନା । ଜୀବନ ଦେଖିଲା ଯେଉଁ କବାଟଟିକୁ ସେ ଅନେକ ଆଗରୁ ଆଉଜି ଦେଇଥିଲା ଆଲୋକର ଅତ୍ୟାଚାରରୁ ରକ୍ଷା ପାଇବା ପାଇଁ ସେଇଟା ଆସ୍ତେ ଆସ୍ତେ ଏବେ ମେଲି ଯାଉଚି । କୋଠରୀ ଭିତରେ ଆଲୋକ ପୁଣି ବିଛାଡ଼ି ହେଇ ପଡ଼ିଲା । ଯେମିତି ଆଲୋକ ନିଜେ ବନ୍ଦ ଥିବା କବାଟକୁ ନିଜର ସମସ୍ତ ଶକ୍ତି ଖଟେଇ ଧୀରେ ଧୀରେ ଖୋଲୁଚି ଏବଂ କବାଟ ଯେତିକି ଖୋଲୁଚି ମେଞ୍ଚା ମେଞ୍ଚା ଆଲୁଅ ଘର ଭିତରକୁ ସେତିକି ପଶି ଆସୁଚି ।

"କଅଣ ହେଲା ? ଘରଟା ଅନ୍ଧାର କରି ରଖିଚୁ ଯେ ?" ଜୀବନ ସାମନାରେ ତାର ବାପା । ଦୁହେଁ ଦୁଇ ଜାଗାରେ ଅଟକି ଯାଇଚନ୍ତି । ମଝିରେ ଦୁଆରବନ୍ଧ ଦୁହିଁଙ୍କୁ ଅଲଗା କରି ଦେଇଚି । ଦୁହିଁଙ୍କୁ ଦୁଇ ଅଜଣା ଇଲାକାରେ ଅଟକେଇ ଦେଇଚି । କେହି ସେମାନଙ୍କ ସୀମା ଡେଇଁ ଆଗକୁ ଯିବାକୁ ସାହସ କରୁ ନାହାନ୍ତି ।

ତେବେ କଅଣ ଦୁହେଁ ଦୁହିଁଙ୍କୁ ଭୟ କରୁଛନ୍ତି ? ସେମାନେ ପରସ୍ପରକୁ ଅନାବଶ୍ୟକ ଭାବରେ ଭେଟୁଛନ୍ତି ବୋଲି ମନେ କରୁଛନ୍ତି ? ଭାବୁଚନ୍ତି କି ଆମେ ଜାଣି ନ ଥିଲୁଁ ଆମେ ଦୁହେଁ ଭେଟା ଭେଟି ହେଇଯିବା ବୋଲି ? ଏମିତି ଆକସ୍ମିକ ଭାବରେ ଏବଂ ଆଲୋଡ଼ା ଅବସ୍ଥାରେ ଦୁହେଁ ଦୁହିଁଙ୍କୁ ଏମିତି ଭାବରେ ଭେଟିଲେ ଯେ କିଏ ପ୍ରଥମେ କଥା କହିବ ଓ କଅଣ କହିବ ସେ କଥା ଠିକ୍ କରି ପାରୁ ନ ଥିଲେ ।

ଜୀବନ ବୁଝିଲା । ବାପା କାହିଁକି ଆସିଚନ୍ତି । ସେ ଜାଣିଲା ବାପା କଅଣ ଚାହାନ୍ତି । ବାପା କଅଣ ପାଇଁ ଏ ଅବେଳଟାରେ ଏ କବାଟରେ ହାତ ମାରିଲେ ।

ତାଙ୍କ ମନରେ କି କି ପ୍ରଶ୍ନ ଏବେ ଉଙ୍କି ମାରୁଚି ବା ମାରୁ ଥାଇ ପାରେ ସେ କଥା ଯେ ଜୀବନକୁ ଛୁଇଁ ନାହିଁ ସେ କଥା ନୁହେଁ।

"କଅଣ ହେଲା ? ତୁ ଯାଇଥିଲୁ ?" ବାପା ଉପରକୁ ଚାହିଁ ପଚାରିଲେ। ଏଥିରୁ ଜଣା ପଡୁଥିଲା ଯେ ସେ ପ୍ରଶ୍ନ ଉପରେ ମୋଟେ ଗୁରୁତ୍ୱ ଦେଉ ନାହାନ୍ତି। ଏମିତି ଗୋଟାଏ ପଚାରି ଦେଲେ।

ଜୀବନ ତଳକୁ ମୁହଁ ପୋତିଲା। ମେଲା କବାଟ ଦେଇ ସେତେବେଳେ ଅନେକ ଆଲୋକ ଜୀବନ ଉପରେ ପଡ଼ି ତାକୁ ଉଚ୍ଛନ୍ନ କରି ପକାଉ ଥିଲା। ସେ ସେଥିରୁ ରକ୍ଷା ପାଇବା ପାଇଁ ପ୍ରାଣମୂର୍ଚ୍ଛା ଉଦ୍ୟମ କଲା। କିନ୍ତୁ ଏବେ ଏବେ ସେ ଅନୁଭବ କରୁଚି ଯେମିତି ଆଲୋକର ଅତ୍ୟାଚାର ଅପେକ୍ଷା ବାପାଙ୍କ ପ୍ରଶ୍ନର ଅତ୍ୟାଚାର ତାକୁ ବେଶି ଯନ୍ତ୍ରଣାଦାୟକ ମନେ ହେଉଚି। ସେ ଅତିଷ୍ଠ ହେଇ ଉଠୁଚି। ଆଃ, ସବୁ ଯନ୍ତ୍ରଣା ଯେମିତି ତା ଉପରେ ଅଜାଡ଼ି ହେଇ ପଡୁଚି।

ଏଇ ସବୁ ମୁହୂର୍ତ୍ତମାନଙ୍କରେ ଜୀବନ ଛଳନାର ଛତାଟିଏ ନେଇ ମୁଣ୍ଡ ଉପରେ ତୋଳି ଧରେ ଏବଂ ଅନେକଗୁଡ଼ିଏ ନିଶ୍ଚିତ ଆକ୍ରମଣରୁ ନିଜକୁ ବଞ୍ଚେଇବାକୁ ଚେଷ୍ଟା କରେ। ତା ପରେ କଇଁଛ ବେଙ୍କଟିକୁ ନିଜ ଖୋଳପା ଭିତରେ ଭର୍ତ୍ତି କରି ଚୁପ ଚାପ ଭିତରେ ପଡ଼ିରହେ, ପିଠି ଉପର ଦେଇ ଝଡ଼ଟା ଚାଲି ଯିବାଯାଏ।

ଜୀବନ ଏଥର ସେ ସବୁ କିଛି କରି ପାରିଲାନି। ତା ନିଜ ଭିତରେ ଅନ୍ତତଃ ଗୋଟାଏ ସହଜ ଉତ୍ତର ଖୋଜି ଅଣ୍ଡାଳି ପକାଇଲା। ସବୁଠି ମଣ୍ଡି ଚକଟି ପକାଇଲା। କିନ୍ତୁ ସବୁଠି ସେ ହତାଶ ହେଲା। ତା ପାଟି ବନ୍ଦ ହେଇଗଲା। କଅଣ କହି ସେ ଏଥର ମଧ୍ୟ ତା ଉପରେ ଅନେକ ଆଶା ପୋଷଣ କରୁଥିବା ବାପାଙ୍କୁ ଭୁଲେଇ ଦେଇ ପାରିବ ସେ ଚିନ୍ତା କରିପାରୁ ନଥିଲା।

"ହୁଁ, ବୁଝିଲି। ହଉ, ଠିକ୍ ଅଛି।" ବଡ଼ ଗମ୍ଭୀର ତଥା ଗୋଟାଏ ହତାଶିଆ ସ୍ୱରରେ ବାପା କହିଲେ।

ସେ ଫେରିଗଲେ। ବାପା ଆସିଥିଲେ ଯାହା ପାଇବା ପାଇଁ, ସେ ପାଇଲେନି। ଚଉଷଠି ବର୍ଷର ଅବସର ପ୍ରାପ୍ତ ବାପାଙ୍କ ଅନ୍ତର୍ଦାହ କେବଳ ଜୀବନ ଛଡ଼ା ଆଉ କେହି ସେ ଘରେ ବୁଝିବାକୁ ନାହିଁ।

ଜୀବନ ନିଜ ଜୀବନର ଅଲିଖିତ ଇତିହାସର କେତୋଟି ପୃଷ୍ଠା ଉଲଟାଇ ପକାଇଲା। କି ସୁନ୍ଦର ସେ ପୃଷ୍ଠାଗୁଡ଼ାକ। ଏବେବି ଚିକ୍ ଚିକ୍ କରୁଚି। ଅକ୍ଷରଗୁଡ଼ାକ ଯେତିକି ସ୍ପଷ୍ଟ ସେତିକି ସେ ଭାଷା ପ୍ରାଂଜଳ। କିଛି କେବେବି ଅବୁଝା ହେଇ ନାହିଁ। ଅବୁଝା ହେବାର ଆବଶ୍ୟକତା ଅନୁଭବ କରା ଯାଇ ନାହିଁ। ଗୋଟାଏ ପାହାଡ଼ରୁ ଆସି ସମତଳ ଅଞ୍ଚଳରେ ଡେଇଁ ଡେଇଁ ଖେଳି ଖେଳି ଯାଉଥିବା ନଈଟିଏ ପରି

ସେ ସମୟଗୁଡ଼ାକ ଗାଁ, ବଣ, ବିଲ, ନଈପଠା, ପୁଣି ଶୀତ ବସନ୍ତ ସବୁକୁ ପଛକୁ ପକେଇ ଅନାୟାସରେ ଅତିକ୍ରମ କରି ଆସିଚି। ନା ଗୋଡ଼ରେ କାଦୁଅ ଲାଗିଚି ନା କଣ୍ଟା ବାଜିଚି।

ସେ ଆଉ କେଇଟା ପୃଷ୍ଠା ଅନ୍ୟମନସ୍କ ହୋଇ ଲଲଟେଇ ଦେଲା। ଅଚାନକ ଅଟକି ଗଲା ଯେଉଁଠି ସେ ସେଠି ଦେଖିଲା ବେଳାଏ ଆମ୍ବ ବଉଳ— ମହ ମହ ବାସନାରେ ମହଲ ଫାଟି ପଡ଼ୁଚି। ଜୀବନ ତା ଜୀବନର ପ୍ରଥମ ଆମ୍ବ ବଉଳ ଦେଖି ବିମୁଗ୍ଧ ହେଇଗଲା। ଭାବିଲା ଏଇ ପାଖରେ ଏତେ କଥା ଥିଲା, ଅଥଚ ସେ କେମିତି ଜାଣି ନଥିଲା। କେମିତି ଜାଣି ନଥିଲା ଯେ ପାଗଳ ପରି ଘୂରି ବୁଲୁଥିବା ମୃଗୁଣୀର ନାଭି କେନ୍ଦ୍ରହିଁ କସ୍ତୁରୀର ଉତ୍ପତ୍ତି ସ୍ଥଳ। ଆରେ, ସେଇଟା ପୁଣି କଅଣ? ପେଣ୍ଟା ପେଣ୍ଟା ବଉଳ ଭିତରେ ଏ ଫୁଲ ମଲ ମଲ ମୁହଁ କୋଉଠୁ ଆସିଲା? କାହାର ଏ ମୁହଁ? ଭୂଲରେ କୋଉ ସ୍ୱର୍ଗ ରାଜ୍ୟରୁ ବାଟ ଭୁଲି ପକେଇ ଆସିଲା? ଭୁଲରେ କୋଉ ସ୍ୱର୍ଗ ରାଜ୍ୟରୁ ବାଟ ଭୁଲି ପକେଇ ଆସି ଥିବା ପରୀ? ଫୁଲବଣ ଭିତରେ ଫୁଲ ଟାଗୁଡ଼ିଟାଏ କି?

ଜୀବନ ବହିଟିକୁ ବନ୍ଦ କରି ଦେଲା ଏବଂ ପଚାରିଲା, ଏ ଅବେଳଟାରେ ତୁ କୋଉଠୁ ଆସିଲୁ? କାହିଁକି ଆସିଲୁ ଯେ? କଅଣ ଶୁଣିବାକୁ? ଯୋଉ ପ୍ରଶ୍ନର ଉତ୍ତର ବାପା ନ ପାଇ ଦୀର୍ଘଶ୍ୱାସ ପକେଇ ଏଇ ଏବେ ଏବେ ଫେରିଗଲେ, ସେଇ ପ୍ରଶ୍ନର ଉତ୍ତର ଦେବାପାଇଁ ମୋ ପାଖରେ ଗୋଟିଏ ବି ଶବ୍ଦ ନାହିଁ। ମୋର ନିପାରିଲା ପଣ ଦେଖି ସବୁ ଶବ୍ଦମାନେ ମୋତେ ପ୍ରତ୍ୟାଖ୍ୟାନ କରିଚନ୍ତି।

ଶବ୍ଦମାନେ ସେଇଠି ଭିଡ଼ ଜମାନ୍ତି ଯେଉଁଠି ଶବ୍ଦରେ ଅର୍ଥ ଯୋଡ଼ି ହୁଏ। ଶବ୍ଦମାନେ ସେଇଠି ପସରା ମେଲି ଦିଅନ୍ତି ଯେଉଁଠି ସେମାନଙ୍କୁ ଧରି ରଖିବା ପାଇଁ ଅନେକ ଆଂଜୁଳା ଏକାଥରେ ଆଗେଇ ଆସନ୍ତି। ଶବ୍ଦ ସେଠି ଧନୀ ବନିଯାଏ। ତାର ଚାଲବୁଲ ହୁଏ ଆଡ଼ମ୍ବରପୂର୍ଣ୍ଣ। ଅର୍ଥପୂର୍ଣ୍ଣଭାବ ଗମ୍ଭୀର। ଏବଂ ତାକୁ ଦେଖି ମଣିଷ ବିସ୍ମୟ ବିଭୋର ହେଇଯାଏ।

କିନ୍ତୁ ଜୀବନ ପାଖରେ ଶବ୍ଦଗୁଡ଼ିକ ସବୁବେଳେ ଅର୍ଥହୀନ ଏବଂ ଗନ୍ଧହୀନ। ତେଣୁ ତୁ ଆଜି ମୋଠୁ ଆଉ କଅଣ ଶୁଣିବୁ ଶ୍ରାବଣୀ? ମୁଁ ଏଥର ମଧ୍ୟ ସଫଳତା ଲାଭ କରି ପାରି ନାହିଁ। ମୋର ସମସ୍ତ ଶିକ୍ଷା, ଦୀକ୍ଷା, ଗବେଷଣା, ସ୍ୱର୍ଣ୍ଣ ପଦକ, ବିଶ୍ୱ ବିଦ୍ୟାଳୟର ରେକର୍ଡ଼ ଏଥର ମଧ୍ୟ ବୁରୋକ୍ରେସୀର ବିସ୍ତୀର୍ଣ୍ଣ ଜାଲର ପାଖାପାଖି ଅଞ୍ଚଳକୁ ସୁଦ୍ଧା ଯାଇ ପାରିଲାନି। ଗୋଟାଏ ତୃତୀୟ ଶ୍ରେଣୀର କିରାଣି ଚାକିରି ପାଇଁ ମଧ୍ୟ ମୁଁ ଯୋଗ୍ୟ ବିବେଚିତ ହେଇ ପାରିଲି ନାହିଁ।

ବାପା ହୁଏତ ଭାବୁଥିବେ ଚାକିରିଟିଏ ପାଇବାକୁ ଯେତିକି ଚେଷ୍ଟା ଆବଶ୍ୟକ ମୁଁ ତାହା କରି ପାରୁନାହିଁ। ମୁଁ ସେଠି ମଧ୍ୟ ସେ 'ଚେଷ୍ଟା' ଶବ୍ଦର ଅର୍ଥ ବୁଝି ନାହିଁ।

ମୋର ସମସ୍ତ ପାଠର ପ୍ରତ୍ୟେକ ଗଳି କନ୍ଦି ମୁଁ ଖୋଜିଚି। ଅନେକ ଖୋଜିଚି। କିନ୍ତୁ ସେ ଅଲୌକିକ ଶବ୍ଦର ଐନ୍ଦ୍ରଜାଲିକ ଅର୍ଥ ମୁଁ ଏ ଯାଏ ଖୋଜି ପାଇନି। କେହି ଜଣେ ହେଲେ ମୋତେ ସେ ଶବ୍ଦର ଅର୍ଥର ସଂଧାନ ଦେଇ ପାରି ନାହାନ୍ତି। ମୋର ମନେ ହେଉଚି ବାପା ଯେଉଁ 'ଚେଷ୍ଟା' କଥା କହୁଚନ୍ତି ତାହା ମୋ ଅଭିଧାନ ବାହାରେ। ସେ ଏକ ଭିନ୍ନ ପୃଥିବୀର କଥା। ମୋ ପାଖରେ ଯଦି ସେମିତି କିଛି ଶକ୍ତି ଥାଆନ୍ତା, ସେମିତି କିଛି ମନ୍ତ୍ର ମୋତେ ଜଣା ଥାଆନ୍ତା। ତେବେ କେଜାଣି ମୁଁ ହୁଏତ ସେ ପ୍ରକାର ନୂଆ ପୃଥିବୀରେ ପହଞ୍ଚି ପାରନ୍ତି।

ଧରିଥିବା ବହିଟିକୁ ସେ ଘରର ଗୋଟାଏ କୋଣକୁ ଫୋପାଡ଼ି ଦେଲା ପରି ଜୀବନ ପଢ଼ କଥାଗୁଡ଼ିକୁ ଭୁଲି ଯିବାକୁ ଠିକ୍ କଲା ଏବଂ ତା'ପରେ କବାଟଟାକୁ ଅତି ସନ୍ତର୍ପଣରେ ବନ୍ଦ କରି ଦେଇ ଆସି ବିଛଣାରେ ନିଜ ଦେହକୁ ଲମ୍ବାଇ ଦେଲା।

ଆଃ, ଅନ୍ଧାରଟା କେତେ ଚମତ୍କାର ସତେ। କେତେ ସୁନ୍ଦର, କେତେ ଶୀତଳ। ଆଉ କେତେ ମନୋରମ ତାର ଦୃଶ୍ୟପଟ। ତାର ମନେ ହେଲା ପିଲାବେଳେ ଜୀବନ ଯେମିତି ଖେଳିବୁଲି ଆସି ହାଲିଆ ହେଇ ପଡ଼ିଲେ ତା ମାଆ ତାକୁ କୋଳକୁ ଟାଣି ନେଇ ଆଉଁସି ଦେଉଥିଲେ, ମୁହଁରୁ ଝାଳ ପୋଛି ଦେଉଥିଲେ, ଆଜି ଅଂଧାର ସେମିତି ତାକୁ କୋଳେଇ ନେଇ ଗେଲ କରୁଚି। ଗେଲ କରି ଚୋକ ଦେଉଚି। ତା ମୁଣ୍ଡର ବାଳକୁ ସାଉଁଳି ଦେଉଚି। ଅଂଧାର ତାକୁ ଯେମିତି କହୁଚି, "ଆ ହାଲିଆ ହେଇ ଯାଇଚୁ କି? ଜୀବନ ଯୁଦ୍ଧରେ ଥକି ପଡୁଚି କି, ତୋ ହାତ ଗୋଡ଼ ଅବଶ ହେଇ ଯାଇଚି ପରି ଲାଗୁଚି। ଗୋଟିଏ ମନ, ଗୋଟିଏ ବିବେକ, ଗୋଟିଏ ଶରୀର ନେଇ ତୁ ଏତେ ବଡ଼ ପୃଥିବୀରେ ଏତେ ଲୋକଙ୍କ ସହିତ କେମିତି ଲଢ଼େଇ କରି ପାରିବୁ ଯେ? ଏତେ ଶକ୍ତି ତୋର କୋଉଠୁ ଆସିବ? ତୁ ଆ, ମୋ କୋଳକୁ ଆ। ମୁଁ ତୋତେ ଆଶ୍ରୟ ଦେବି। ତୁ ଶାନ୍ତି ପାଇବୁ। ମନେରଖ, ଯାହା ଆଲୋକ ଦେଇ ପାରେନା ତାକୁ ଅଂଧାର ଦେଇପାରେ। ଅତି ସହଜରେ ଦେଇପାରେ। ଆ ମୋ କୋଳକୁ।

ଜୀବନର ଆଖି ମୁଦି ହେଇ ଆସିଲା। ସେ ଶୋଇବାକୁ ଚେଷ୍ଟା କଲା। ଏବେ ଆଉ କେହି ଆସି ତାକୁ ଡିଷ୍ଟର୍ବ କରିବ ନାହିଁ। ଆଉ କିଏ ଅଛି? କିଏ ବା କାହିଁକି ତାକୁ ଡିଷ୍ଟର୍ବ କରିବ?

ଘର ଭିତରେ କିଟି କିଟି ଅଂଧାର। ବୋଧେ ଯା ଭିତରେ ସଂଜ ହେଇ ଆସିଲାଣି। ହୁଏତ ରାତି ମଧ୍ୟ ହେଇ ଯିବଣି। କାରଣ ଏଇ କିଛି ସମୟ ପୂର୍ବରୁ ସେ ଯେଉଁ ଚଢ଼େଇମାନଙ୍କର କୋଳାହଳ ଶୁଣୁଥିଲା, ସେମାନଙ୍କର ଘର ବାହୁଡ଼ା କଳରବ ଏବେ ବନ୍ଦ ହେଇ ଗଲାଣି। ସେମାନେ ତାଙ୍କ ଘରକୁ ଫେରି ଆସିବେଣି।

ସେମାନଙ୍କ ପରିବାର ସହିତ ସେମାନେ ଭେଟାଭେଟି ହେବେଣି । ପିଲାଛୁଆର ପରିବାରଟି କେତେ ସମୟ ପାଇଁ ଆନନ୍ଦ ମୁଖର ହୋଇ ଉଠିଥିବ । ସମସ୍ତେ ହୁଏତ ସେଇ ମଧୁର ମୁହୂର୍ତ୍ତକୁ ଉପଭୋଗ କରିବାକୁ ଏକ ନୂତନ ଭାବାବେଗରେ ଉଲ୍ଲସିତ ହୋଇ ଉଠିଥିବେ ।

ଆଉ ଜୀବନ ? କୋଉଠି ସେ ? ତାର ପରିବାର ? ତାରବି ଗୋଟାଏ ସ୍ୱପ୍ନ ଥିଲା । ସେଥିରେ ସେ ଗୋଟାଏ ବସା ବାନ୍ଧିବାକୁ ସୁନ୍ଦର ସୁନ୍ଦର ନକ୍ସାମାନ ଆଙ୍କୁଥିଲା । କିନ୍ତୁ କାହିଁ ? କୁଆଡ଼େ ଗଲା ସେ ସବୁ ?

ପର ମୁହୂର୍ତ୍ତରେ ପୁଣି ଭାବିଲା ଆଜି ଆଉ ସେ ସବୁ ଭାବିବାର ଅବକାଶ ନାହିଁ । ତାର ସେ ସବୁ ଆଉ କିଛି ଦରକାର ନାହିଁ, ବରଂ କେହି ତା ପାଖକୁ ନ ଆସନ୍ତୁ । କାହାକୁ ସେ ଭେଟିବାକୁ ଚାହେଁନା । କାହାକୁ ସେ କୌଣସି ଉତ୍ତର ମଧ୍ୟ ଦେବାକୁ ଚାହେଁନା । ସେ ଆଜି ସମସ୍ତଙ୍କର ଶତ୍ରୁ । କେହି ତାକୁ ଭଲ ପାଆନ୍ତିନି । ବେକାର ଯୁବକଟି ପ୍ରଥମେ ତାର ବାପର ଶତ୍ରୁ । ତାପରେ ଦ୍ୱିତୀୟରେ... ।

କାହା କଥା ସେ ଭାବୁଛି ? ଯେ ତାକୁ ଯୁଗ ଯୁଗ ଧରି ଅପେକ୍ଷା କରିବ କହିଥିଲା । କିନ୍ତୁ କାହିଁକି ? କାହିଁକି ସେ ଏମିତି ନିଜକୁ ତିଳ ତିଳ କରି ହତ୍ୟା କରୁଛି ? ସମଗ୍ର ପୃଥିବୀତ ତା ପାଇଁ ଅପେକ୍ଷା କରିଥିବ । ତେବେ ଏ ଅସାଧ୍ୟ ସାଧନ ପାଇଁ ଚେଷ୍ଟା କାହିଁକି ? ସେ ବି ତ ମୋତେ ଅଭିଶାପ ଦେଉଥିବ ।

ଜୀବନର ମନେହେଲା, କାହାର କରାଘାତରେ କବାଟ ଦେହରେ ପୁଣି ଥରେ କମ୍ପନ ସୃଷ୍ଟିହେଲା ।

କିଏ ଇଏ ? କିଏ ହୋଇପାରେ ? ଶ୍ରାବଣୀ ?

ସେ ଧଡ଼ପଡ଼ ହୋଇ ଉଠି ପଡ଼ିଲା ଏବଂ ଦଉଡ଼ି ଯାଇ କବାଟଟାକୁ ପଛପଟୁ ଠେଲି ଧରିଲା । ତାର ମନେ ହେଲା ସେ ପଟୁ କେହି ଜଣେ କବାଟକୁ ଖୁବ୍ ଜୋରରେ ଠେଲୁଛି । ଜୀବନ ହୁଏତ ସମ୍ଭାଳି ପାରୁନାହିଁ । ସେ ନିଜର ସମସ୍ତ ଶକ୍ତି ଖଟେଇ ଆହୁରି ଜୋରରେ କବାଟକୁ ଠେଲି ଧରିଲା ଏବଂ କିଛି ସମୟ ପରେ କାନ ପାରି ଶୁଣିଲା । ସେ ପଟୁ କୌଣସି ଶବ୍ଦ ଶୁଣା ଯାଉ ନଥିଲା । କୌଣସି ଶୋର ଶବ୍ଦ ମଧ୍ୟ ନ ଥିଲା ।



*(ଝଙ୍କାର, ଅଗଷ୍ଟ, ୧୯୯୯)*

# ସମୟର ସ୍କେଚ୍

ସେ ସେମିତି ବସିଥିଲେ। ଯେମିତି ସେ ବରାବର ବସନ୍ତି। ଗୋଟାଏ ପୁରୁଣା ବେତର ଆରାମ ଚେୟାର। ଯାହାର ପିଠି ପାଖଟାରେ ମଇଳା ଜମି କଳା ଦେଖା ଗଲାଣି। ଯାଦୁ ପରି ଫଡ଼ା ଫଡ଼ା। ଆଉ ଠିକ୍ ମଥାର ପଛ ପାଖରେ ତେଲ ଚିକିଟା ଲାଗି ଲାଗି ଖାଲି ଯେ କଳା ପଡ଼ି ଯାଇଛି ତା' ନୁହେଁ ବରଂ ସେଇ ଅଂଶଟା କିଛି ଉପରକୁ ଉଠି ପଡ଼ିଚି।

ଚେୟାରଟା ପଡ଼େ ଲନରେ କିମ୍ବା ବାରଣ୍ଡାରେ। ବାରଣ୍ଡାଟା ତିନିଫୁଟ ଉଚ୍ଚ। ତା'ମାନେ ତାଙ୍କ ବସିବା ଜାଗାରୁ ତିନିଫୁଟ ତଳେ ଥାଏ ବିସ୍ତୀର୍ଣ୍ଣ ଘାସ ପଡ଼ିଆ। ପ୍ରାୟ ଶହେଫୁଟ ଲମ୍ବ। ତା'ପରେ ଥାଏ ଗୋଟାଏ ପୁରୁଣା ଓ କଳଙ୍କି ଲଗା ଲୁହାର ଗେଟ୍। ପଡ଼ିଆକୁ ମଝିରୁ ଦୁଇ ଫାଳ କରି ବାରଣ୍ଡା ପାଖରୁ ଲମ୍ବି ଯାଇଛି ସରୁ ଓ ଅଣଓସାରିଆ ରାସ୍ତାଟିଏ ଗେଟ୍ ଯାଏ।

ଗେଟ୍ ବାହାରୁ ଘରଟିକୁ ଦେଖିଲେ ମନେହେବ ଯେମିତି ଘରେ କେହି ନାହାନ୍ତି। ପୁରୁଣା ପରିତ୍ୟକ୍ତ ଘରଟିଏ। ଘର ଚାରିପଟେ ଗଛ ଗାଛଲି ଅନେକ ଥିଲେ ମଧ୍ୟ ସେଥିରେ କାଉ କୋଇଲିଟିଏ ମଧ୍ୟ ଦେଖା ଯାଏନି। ଏକୁଟିଆ ନୀରବ ନିଥର ପରିବେଶରେ ବୃଦ୍ଧଜଣଙ୍କର ବସିବାକୁ ସେମାନେ ସମବେଦନା ଜଣେଇବାକୁ ବୋଧେ ମୋଟେ ଇଚ୍ଛାକରୁ ନ ଥିବେ।

ବୃଦ୍ଧ ସେଦିନ ବସିଥିଲେ ଲନ୍ ଉପରେ। ସେମିତି ଧୀର ଓ ସ୍ଥିର। ଅଚଳ ଓ ଅସାଡ଼ ଯେମିତି। ହାତ ଗୋଡ଼ ଟିକିଏ ବି ହଲେନି। ମୁଣ୍ଡ ନୁହେଁ କି ଆଖି ବି ନୁହେଁ। ଜଣେ ଦୂରରୁ ଦେଖି ଭାବୁଥିବ ଯେ ପଥରର ମୂର୍ତ୍ତିଟିଏ ରଖା ହୋଇଛି। କିନ୍ତୁ ଏମିତି ନୀରବ ହୋଇ ଏକୁଟିଆ ନିର୍ଜନ ପରିବେଶରେ ବୃଦ୍ଧଜଣଙ୍କ କ'ଣ ଭାବୁଥିବେ? କ'ଣ ତାଙ୍କ ମନ ଭିତରକୁ ଆସୁଥିବ? ଯେଉଁ ଚିତ୍ର ତାଙ୍କ ମନ ଭିତରକୁ ଆସୁଥିବ ସେଗୁଡ଼ିକ କେଉଁ ସମୟର? ଅତୀତର? ବର୍ତ୍ତମାନର?? ଭବିଷ୍ୟତର??? ତାଙ୍କ ସାମ୍ନାରେ ହୁଏତ ଅତୀତଟା ଯେତେ ଲମ୍ବ, ବର୍ତ୍ତମାନଟା ସେତେ ନୁହେଁ, ଆଉ ଭବିଷ୍ୟତଟା ?

ତାଙ୍କ ସାମ୍ନାରେ ଭବିଷ୍ୟତଟା କେତେ ଛୋଟ ଦେଖାଯାଉ ନ ଥିବ ସତେ? ଅନେକ ଛୋଟ। ହାତେ ଦି ହାତ ବି ଆଗକୁ ଦେଖାଯାଉ ନ ଥିବ କିମ୍ବା ତା'ଠାରୁ ଆହୁରି କମ୍। ଏଇ ଆଗରେ ସରି ଯାଉଥିବା ପରି ଲାଗୁଥିବ। ଗୋଟାଏ ପୋଲର ଶେଷ ମୁଣ୍ଡରେ ପହଞ୍ଚିଲେ ଯେମିତି ଲାଗେ, ଆଉ ପୋଲ ନଥାଏ କି ଆଗକୁ ଯିବାକୁ ବି ବାଟ ଦେଖାଯାଉ ନ ଥାଏ।

ବୃଦ୍ଧମାନଙ୍କ ପାଇଁ ଆଗଟା ସବୁବେଳେ ଛୋଟ, ସଂକୀର୍ଣ୍ଣ ଓ ଅସ୍ପଷ୍ଟ। ଝାପ୍‌ସା ବା ଅନ୍ଧାରୁଆ ବି କହି ହେବ। ତା'ପରେ ଆଉ କ'ଣ? ଆଖି ପାଉ ନ ଥିବ। ଭାବି ହେଉ ନ ଥିବ। ଅଥଚ ସେଇଠି ସରିଗଲା କହି ଅଟକି ଯାଇ ହେଉ ନ ଥିବ। ଆଗକୁ ବାଟ ଥିବ ଅଥଚ ବଢ଼ିଥିବା ପାଦ ଦି'ଟା ସେଇଠି ଅଟକିବ କି ନା କହିହେଉ ନ ଥିବ। ଗୋଟାଏ ଅନିଶ୍ଚିତ ଅବସ୍ଥା, ଅନିଶ୍ଚିତ ଅବସ୍ଥାର ବାଟଟା ସବୁବେଳେ ଏମିତି। ବିଶ୍ୱାସ ନ ଥାଏ। ନ ଥାଏ ବି ତା' ଉପରେ ଭରସା। ବଡ଼ ଅବିଶ୍ୱାସୀ। ସବୁବେଳେ ସିଏ ମଣିଷକୁ ଦଗା ଦେବାକୁ ବାଟ ଖୋଜୁଥାଏ। ସୁଯୋଗ ଉଣ୍ଡୁଥାଏ। ସୁଯୋଗ ପାଇଲେ ହିଁ ଝାମ୍ପିପଡ଼େ। ବେକ ମୋଡ଼ିଦିଏ।

ତେବେ ବୃଦ୍ଧ ଏମିତି ବସି କ'ଣ ଦେଖୁଛନ୍ତି? ଏମିତି ଅପଲକ ନେତ୍ରରେ? ବର୍ତ୍ତମାନକୁ? କ'ଣ ତାଙ୍କର ବର୍ତ୍ତମାନ? ତା'ର ପରିଚୟ? କେତେ ଲମ୍ବା ସେ ବର୍ତ୍ତମାନ? ତାଙ୍କ ଆଗରେ ନା ପଛରେ? ବାଁ କି ଡାହାଣରେ ଥିଲା ପରି ଦେଖା ଯାଉନି। ତେବେ ତାଙ୍କ ବର୍ତ୍ତମାନର ରୂପ କ'ଣ?

ସଞ୍ଜ ନଇଁ ଆସିଲାଣି। ପାହାଡ଼ର ମଥା ଉପରେ ମେଞ୍ଚେ ଆଲୁଅ ଖାଲି ଏପାଖ ସେପାଖ ହେଉଚି। ଅନ୍ଧାରକୁ ଡରି ଲୁଚି ପଳେଇବ ବୋଲି ଚିନ୍ତା କରୁଚି। ଅନ୍ଧାରକୁ ତା'ର ବଡ଼ ଡର। ସବୁବେଳେ ସବୁ କାଳେ ଆଲୁଅଟା ଅନ୍ଧାରକୁ ହିଁ ଭୟ କରି ଆସିଚି। ସୁରମାନେ ଅସୁରକୁ ଡରୁଥିଲା ପରି। ନିଜ ବୀରତ୍ୱକୁ କାଖରେ ଜାକି ଅତରଛରେ ଦଉଡୁ ଥିବ। ଅନ୍ୟ ଇଲାକାରେ ପଶି ଯାଇଥିବା କୁକୁର ନିଜର ଭୁଲ ବୁଝିପାରି ପଛକୁ ଦେଖୁଥିବା ପରି। ଆଖିବୁଜା ଏକା ନିଃଶ୍ୱାସରେ ଦଉଡ଼ୁଥିବ। ଖାଲି ବେଳେ ବେଳେ ପଛକୁ ଦେଖୁଥିବ। ଆଉ ସେତେବେଳେ ଅନ୍ଧାରଟା ବଡ଼ ଦର୍ପରେ ମାଡ଼ି ଯାଉଥିବ। ସେ ଯେ ସେତେବେଳେ ରାତିକୁ ନିଘାରଖି ଦଉଡୁଥିବ ତା'ର କିଛି ମାନେ ନାହିଁ। ରାତି ସାଥିରେ ଦୋସ୍ତି କରିବା ବେଳେ ଅନ୍ଧାର ଇମିତି ଦଉଡ଼େ ଆଉ ସବୁକୁ ପଛକୁ ପକେଇ। ସେତେବେଳେ ସେ ଆଉ କୌଣସି କଥା ମନକୁ ଆଣେନା। ରାତି ସହିତ ଅନ୍ଧାରର ପ୍ରୀତି କୋଉ ଯୁଗର। ହୁଏତ ସୃଷ୍ଟି ଆରମ୍ଭରୁ।

ପ୍ରୀତିଟା ଯୋଉଠି ଲକ୍ଷ୍ୟ, ଗତିଟା ସେଇଠି ସେତିକି ବେଗଗାମୀ, ସେତିକି ପରାକ୍ରମୀ ମଧ୍ୟ। ସେ ଆଉ ଆଗ ପଛ କିଛି ଦେଖେନା। ମାନ ମହତ ମାନେନା, ପର ଆପଣା ଖୋଜେନା। ଜାତି ପତି କଥା ବି ଭାବେନା। ଅନ୍ଧାର ସେମିତି ଗୋଡ଼େଇ ଥିଲା ରାତିକୁ। ରାତି ହିଁ ତା'ର ଲକ୍ଷ୍ୟ। ରାତି ହିଁ ତା'ର ସବୁ।

ଚାହୁଁ ଚାହୁଁ ଅନ୍ଧାରଟା କାବୁକରି ପକେଇଲା ପାହାଡ଼ଟାକୁ।

ବୃଦ୍ଧ ଟିକିଏ ହଲଚଲ ହେଲେ। ଦେଖିଲେ ଏ ପାଖ ସେ ପାଖ। ବାହାରେ ଅଖଣ୍ଡ ନିରବତା। ଛାଇ ଛାଇକା ଅନ୍ଧାର ମାଡ଼ି ଆସୁଛି। ଛାୟାଟିଏ ଆସି ଠିଆ ହେଲା। ତୁମେ କ'ଣ ଦେଖୁଚ ବୃଦ୍ଧ? କାହାକୁ ଖୋଜୁଚ?'

''ବର୍ତ୍ତମାନକୁ।''

''ସେ କ'ଣ ତୁମ ପାଖରେ ଥାଏ ?''

''ହଁ, ଏବେ ସେ ହିଁ କେବଳ ମୋର ସାଥି। ମୁଁ ତା'ରି ପାଇଁ କେବଳ ବଞ୍ଚିଛି।''

''ଯେଉଁ ବର୍ତ୍ତମାନ ତୁମକୁ ଗୋଟାଏ ନିର୍ମମ ନିର୍ଜନତା କେବଳ ଦେଉଛି, ଯେଉଁ ନିର୍ଜନତାରେ ତୁମେ ଅହରହ ସନ୍ତୁଳିତ ଜୀବନଯାପନ କରୁଚ ତୁମେ ତା'ର ପ୍ରଶଂସା କରୁଚ ?''

''ବର୍ତ୍ତମାନ ଅଛି ବୋଲି ତ ମୁଁ ଅତୀତର ପାଖାପାଖି ଅଛି। ଅତୀତର ପାଖାପାଖି ଅଛି ବୋଲି ତ ମୁଁ ବଞ୍ଚିଛି। ମୁଁ ବଞ୍ଚିଛି ବୋଲି ମୋର ବର୍ତ୍ତମାନ ମଧ୍ୟ ଅଛି। ଦେଖ, ଏମାନେ କେତେ ପରସ୍ପରର ପରିପୂରକ। ଅତୀତ କେତେ ବିରାଟ। କେତେ ମହାନ୍। କେତେ ଆପଣାର। କେତେ ନିଜର। କେତେ ସ୍ନେହୀ। କେତେ ମମତାମୟୀ। ଆଜ କେତେ ପ୍ରାଣବନ୍ତ ମଧ୍ୟ। ମୋତେ ଲାଗୁଛି ମୁଁ ଏମିତି ବସିନାହିଁ ଯେ ମୁଁ ସବୁବେଳେ ଅତୀତର କୋଳରେ ବସିଚି। ସେ ମୋତେ ତା'ର ଦୁଇ ହାତରେ ଜାବୁଡ଼ି ଧରିଚି, ଆଉଁସି ଦଉଚି ମୋର ଦେହକୁ। ପୋଛି ଦଉଚି ମୋର ଝାଳକୁ। ଥାପି ଦେଉଚି ମୋ ଓଠରେ ତା ଓଠକୁ।

ଆଉ ସେତେବେଳେ ମୋର ରୋମାଞ୍ଚ ସୃଷ୍ଟି ହେଉଚି, ମୋର ରକ୍ତ ଗରମ ହେଇ ଉଠୁଚି। ନିର୍ଜୀବ ପରି ଶୋଇଥିବା ବୀଣାର ତାରରେ ଆଙ୍ଗୁଳିର ସ୍ପର୍ଶରେ ଝଙ୍କାର ସୃଷ୍ଟି ହେଲା ପରି। ଖୁଣ୍ଟର ତାରରେ ହଠାତ୍ ବିଦ୍ୟୁତ ସଞ୍ଚାର ହେଲା ପରି ମୁଁ ଉଠି ପଡୁଚି। ସମସ୍ତ ବଳ ମୋ ଦେହକୁ ଝାମ ଦେଉଚି। ଆଉ ମୁଁ ଖୁବ୍ ଜୋର୍‌ରେ ଦଉଡ଼ି ଯାଉଚି ପଛକୁ - ଅତୀତକୁ।

ଅତୀତକୁ ପୁଣି ବର୍ତ୍ତମାନର ଆଖିରେ ଦେଖୁଚି। ଦେଖୁଚି ମୁଁ ଭେଣ୍ଡାଟିଏ। ମୋ ଛାତି, ଦେହ, ହାତ ଓ ଗୋଡ଼ର ପେଶୀଗୁଡ଼ିକ ଧନୁ ପରି ବଙ୍କେଇ ଫୁଲି ଉଠୁଚି। ସମସ୍ତେ କଥା କହୁଚନ୍ତି। ମୋ ଆଖିରୁ ପ୍ରଜାପତିମାନେ ଡେଣା ମେଲେଇ ଉଡ଼ି ଯାଉଚନ୍ତି। ସେ ଡେଣାରେ ଅସଂଖ୍ୟ ରଙ୍ଗ, ଅସଂଖ୍ୟ ରେଣୁ। ହାତ ଲମ୍ବିଯାଏ ପ୍ରଜାପତି ଧରିବାକୁ। ପ୍ରଜାପତି ଧରା ଦିଏ। ଫେର୍ ଉଡ଼ି ଯାଏ। ହାତରେ ଛାଡ଼ି ଦେଇ ଯାଏ ଅନେକ ରଙ୍ଗ, ଅନେକ ରେଣୁ। ରେଣୁମାନେ ମୋତେ ଦେଖି ହସି ଦିଅନ୍ତି।

ତେବେ କୁହ ବର୍ତ୍ତମାନ ନ ଥିଲେ ଅତୀତକୁ ତୁମେ ଯାଇ ପାରନ୍ତ ? ବର୍ତ୍ତମାନ ହିଁ ଅତୀତର ସୂତ୍ରଧର। ଆଇନା ଆଗରେ ଥିଲେ ନିଜ ମୁହଁକୁ ଦେଖିହୁଏ। ନିଜକୁ ପଢ଼ି ହୁଏ। କ'ଣ ଥିଲା ଓ କ'ଣ ଅଛି ତାକୁ ବାରି ହୁଏ। ମୁହଁ ଦେଖି ଅତୀତର ବର୍ତ୍ତମାନକୁ ମାପିହୁଏ। ତଉଲି ହୁଏ, ଆଉ ବୁଝି ହୁଏ ବି। ଦରକାର ହେଲେ ଆଉଁସି ଦେଇ ବୁଝେଇ ଦେଇହୁଏ।

ସେତେବେଳେ ଏ କଥା ବି କହିହୁଏ, ଆରେ ବର୍ତ୍ତମାନଟା ସବୁବେଳେ ବର୍ତ୍ତମାନ ହେଇ ରହେନା। ସମୟ ଗଡ଼ି ଗଲା ପରେ ସେ ବେଶ ପୋଷାକ ବଦଳେଇ ଅତୀତ ରୂପରେ ଆସି ଠିଆ ହୁଏ। ସେତେବେଳେ ତୁମେ ତାକୁ ଦେଖୁଥିବ,

ଛୁଇଁ ପାରୁ ନ ଥିବ। ତୁମେ ସବୁ ଭାବୁଥିବ, ଅନୁଭବ କରିପାରୁ ନ ଥିବ। ତମେ ତାକୁ ଚିହ୍ନିଥିବ କିନ୍ତୁ ଧରିପାରୁ ନ ଥିବ। ସେ ତମ ହାତ ପାଆନ୍ତାରେ ଥିବ କିନ୍ତୁ ହାତ ବଢ଼େଇଲେ ବାହାରକୁ ଚାଲି ଯାଉଥିବ।'' ବୃଦ୍ଧ ଟିକିଏ ନିଃଶ୍ୱାସ ନେଲେ। ସେ ଥକି ପଡ଼ିଥିଲେ ବୋଧେ।

ଛାୟାଟି କହିଲା, ''ତୁମେ ଯାହା କହୁଚ ସେଥିରୁ ଜଣାପଡୁଚି ତୁମର ଅତୀତ କାରୁଣ୍ୟର ସୁନ୍ଦର ଚିତ୍ରକଳ୍ପଟିଏ। ତୁମେ ତା'ର ଅତ୍ୟାଚାରରେ ଜର୍ଜରିତ ହେଇଚ, ସେ ଅତ୍ୟାଚାରର ପତ୍ର ପାଖୁଡ଼ା ଏବେ ବି ତମ ଶିରା ପ୍ରଶିରାରେ ଚଳଚଞ୍ଚଳ ହେଇ ଉଠୁଚନ୍ତି। ସେମାନଙ୍କ ରାଜତ୍ୱର ପ୍ରସ୍ତରୀଭୂତ ଶିଳାଲେଖ ଏବେ ବି ତମ ଚମ ତଳେ ଉଙ୍କି ମାରୁଚି। ସେମାନେ ପୃଷ୍ଠା ପରେ ପୃଷ୍ଠା ଏମିତି ସଜେଇ ରଖି ଦେଇଚନ୍ତି ଯେ, ତାକୁ ପଢ଼ିବାକୁ ମୋଟେ କଷ୍ଟ ହୁଏନି। ତା' ସତ୍ତ୍ୱେ ତୁମେ ତାକୁ ଭଲ ପାଅ ?''

''ତୁମେ ଭୁଲ୍ କହୁଚ। ମଣିଷର ଅତୀତ ଗୋଟାଏ ସମୟ। ସେ ସମୟ ଯେତେବେଳେ କଥା କହେ ସେତେବେଳେ ତାହା ଇତିହାସ ପାଲଟି ଯାଏ। ସେ ଇତିହାସ କେବେ ମରେନା। ମରି ପାରେନା। ତାକୁ କେହି ମାରିଦେଇ ପାରେନା। ସେ ସବୁବେଳେ ଆଖି ଖୋଲି ଆଗକୁ ଅନେଇ ଥାଏ। ସେ ସବୁବେଳେ ଜୀବନ୍ତ ଥାଏ। ତା' ଭିତରେ ଜୀବନଟିଏ କାଳରୁ କାଳକୁ ବିଚରଣ କରୁଥାଏ। ତେଣୁ ମୋର ଅତୀତ ମଧ୍ୟ ଗୋଟିଏ ସମୟ। ସେ ସମୟ ମୋର ବାଲ୍ୟକାଳରୁ ଏଯାଏ ମୋ ଭିତରେ ବିଚରଣ କରୁଛି। ତା'ର ବିଚରଣର ରାସ୍ତାରେ ଅନେକ ଖାଲ ଢ଼ିପ ଥାଏ। ସେ ଖାଇଢ଼ିପକୁ ତୁମେ କାରୁଣ୍ୟର ଚିତ୍ରକଳ୍ପ କହୁଚ ? କିନ୍ତୁ କାରୁଣ୍ୟ ନ ଥିଲେ ଜୀବନ କାହିଁ? ରାତି ନ ଥିଲେ ଦିନକୁ ଦେଖି ହୁଅନ୍ତା ନାହିଁ। ଅନ୍ଧାର ନ ଥିଲେ ଆଲୁଅକୁ ଚିହ୍ନି ହୁଅନ୍ତା ନାହିଁ ଏବଂ କଳା ନ ଥିଲେ ଧଳାକୁ ବାରି ହୁଅନ୍ତା ନାହିଁ। ମିଛ ନ ଥିଲେ ସତ୍ୟର ସ୍ୱରୂପ କ'ଣ ହେଇ ଥାଆନ୍ତା ? ଅବଶ୍ୟ ତମେ ଠିକ୍ କହିଚ। ମୋ ଜୀବନର କଳା ରାତିଟା ବଡ଼ କରୁଣ। ଦୁଃଖ, ରୋଗ, ଶୋକ ମୋତେ ସେମାନଙ୍କ ଦୁଇ ହାତରେ ଦୁଇଟା ଚାବୁକ ଧରି ଅତି ନିର୍ଦ୍ଦୟ ଭାବରେ ପିଟିଚନ୍ତି। ମୁଁ ନହୁ ନୁହାଣ ହୋଇ ଯାଇଚି। ମୁଁ ଚିତ୍କାର କରି କହିଚି ବଞ୍ଚାଅ, ମୋତେ ବଞ୍ଚାଅ।''

''ମୁଁ ତଥାପି ବଞ୍ଚିଚି। ମୋର ଅତୀତ ମୋତେ ପ୍ରଚୁର ପ୍ରେମ ଦେଇଚି। ସେ ପ୍ରେମ ମୋ ପ୍ରେମିକାର। ମୋ ପତ୍ନୀର। ମୋର ପୁତ୍ର କନ୍ୟା ସମସ୍ତଙ୍କର। ସେଇ ପ୍ରେମ ହିଁ ମୋ ପାଇଁ ସଞ୍ଜୀବନୀ। ତା'ର ବାରମ୍ବାର ଉଚ୍ଚାରଣ ମୋତେ ପୁଣି ଥରେ ଆଶ୍ରା ଦେଇଚି, ଦମ୍ଭ ଧରି ଠିଆ ହେବାକୁ। ଶକ୍ତି ଦେଇଚି ଲଢ଼େଇ କରିବାକୁ। ମୋତେ ଚିନ୍ତା ଶକ୍ତି ଦେଇଚି ମୋର ଅନ୍ତର୍ନିହିତ ଶକ୍ତିଟିକୁ ଚିହ୍ନିବାକୁ, ସେ ଶକ୍ତିକୁ ଚିହ୍ନିବା ବେଳେ ମୁଁ ପାପ ପୁଣ୍ୟକୁ ବିଚାର କରିପାରେଁ। ଭୁଲ ଠିକ୍ ବିଚାର କରିପାରେଁ। ଭଲମନ୍ଦକୁ ବାରିପାରେଁ ଏବଂ ତାହା ହିଁ ମୋର ବଞ୍ଚିବାର ମୂଳମନ୍ତ୍ର।''

"ମୁଁ ବୁଝିଲି ତୁମ ଅତୀତକୁ। ଏବେ ତୁମ ବର୍ତ୍ତମାନ ବିଷୟରେ କିଛି କୁହ। ତୁମେ କେମିତି ଅଛ ?" ବୃଦ୍ଧ ହସିଲେ ଏବଂ କହିଲେ, "ମୋର ସମସ୍ତ ବର୍ତ୍ତମାନ ଏଇ 'କେମିତି ଅଛର' ଚାରିକାନ୍ଥ ଭିତରେ ଆବଦ୍ଧ। ତା'ଠୁ ଆଉ ଅଧିକ ପ୍ରଶ୍ନ ତମେ ବା କ'ଣ ପଚାରିବ ?"

ତାଙ୍କ ମୁହଁରେ ହସ ଟିକକ ଆହୁରି ଲାଖି ରହିଥିଲା। ସେ ବେଶ୍ ପ୍ରସନ୍ନ ଦେଖା ଯାଉଥିଲେ। ସବୁ କିଛି ପାଇବାର ପରିତୃପ୍ତି ଯେମିତି ମଣିଷକୁ ଅନ୍ୟ ଆଗରେ ଚିହ୍ନେଇ ଦିଏ। ପରିଷ୍କାର ଜଣା ପଡ଼ି ଯାଉ ଥିଲା ଯେମିତି ସେ ଅତୀତର ଅନେକ ଉଜାଣି ସୁଅରେ ଯେତିକି ଆହୁଲା ମାରି ଆଗେଇ ଆସି ପାରିଚନ୍ତି, ସେତିକି ସେ ସଂଗ୍ରାମର ରଣଭୂଇଁକୁ ଉପଭୋଗ ମଧ୍ୟ କରିଚନ୍ତି। ସେ ଯୁଦ୍ଧରେ ଜୟକୁ ନେଇ ଉଲ୍ଲସିତ ହେଇ ନାହାନ୍ତି କି ପରାଜୟକୁ ନେଇ ଲୁହ ଗଡ଼େଇ ନାହାନ୍ତି। ବୀର ପରି ସମୟର ସମ୍ମୁଖୀନ ହେଇଚନ୍ତି।

"ଆପଣଙ୍କୁ ଏ ନିର୍ଜ୍ଜନତା, ନିଃସଙ୍ଗତା କେମିତି ଲାଗୁଚି ?"

"ନିର୍ଜ୍ଜନତା, ନିଃସଙ୍ଗତା ଏସବୁ ବର୍ତ୍ତମାନର ଗୋଟିଏ ଗୋଟିଏ ପ୍ରତିନିଧି। ମୁଁ ତାଙ୍କୁ ସମ୍ମାନ ଦିଏଁ। ତାଙ୍କୁ କେହି ଆଡ଼େଇ ଯାଇ ପାରେନା। ସେଇମାନେ ହିଁ ଗୋଟିଏ ଗୋଟିଏ ମାଧ୍ୟମ, ଯାହାଦ୍ୱାରା ମୁଁ ଅତୀତ ପାଖରେ ପହଞ୍ଚିପାରେଁ। ତେଣୁ ସେମାନଙ୍କ ଅବର୍ତ୍ତମାନରେ ମୁଁ ଅତିଷ୍ଠ ହେଇପଡ଼େ। କାରଣ, ମୁଁ ସେମାନଙ୍କୁ ଭଲ ପାଏଁ।"

ବୃଦ୍ଧ ଟିକିଏ ରହିଗଲେ। ଗୋଟାଏ ଆତ୍ମତୃପ୍ତିର ଝଲକ ତାଙ୍କ ଆଖିରେ ଫୁଟି ଉଠିଲା। ସେ ଟିକିଏ ସଳଖି ବସିଲେ ଏବଂ କହିଲେ "ଆପଣତ ମୋତେ ଅନେକ ପ୍ରଶ୍ନ ପଚାରିଲେ, ଏବେ ମୋର ଗୋଟିଏ ପ୍ରଶ୍ନ ଆପଣଙ୍କୁ –"

"ପଚାରନ୍ତୁ।"

"ଆପଣ କିଏ ? ଆପଣଙ୍କୁ ତ ମୁଁ କେବେ ଏଇ ଘରର ପରିସର ଭିତରେ ଦେଖିନାହିଁ। ମୋର ଫାଟକ ବନ୍ଦ ଥିଲାବେଳେ ଆପଣ ଏହା ଭିତରକୁ ପ୍ରବେଶ କଲେ କେମିତି ?"

ଛାୟାଟି ହସିଲା, କହିଲା "ମୁଁ ସବୁଠି ଓ ସବୁବେଳେ ଅଛି। ଆପଣଙ୍କୁ ମୁଁ ଛାଇ ପରି ବରାବର ଜଗି ରହିଚି। ମୁଁ ଆପଣଙ୍କ ପାଖରେ ଆଗରୁ ଥିଲି ଏବଂ ଅଛି ମଧ୍ୟ। ଆପଣଙ୍କୁ ଆପଣଙ୍କ ରାସ୍ତା ଭିତରେ ବାଟ କଢ଼େଇ ନେଇ ଆପଣଙ୍କ ସୀମା ପାଖରେ ପହଞ୍ଚେଇବା ମୋ କାମ।

ବୃଦ୍ଧ ଠିଆ ହେଇ ପଡ଼ିଲେ ଏବଂ ଆଗନ୍ତୁକଙ୍କୁ ଆଲିଙ୍ଗନ କରିବାକୁ ଆଗେଇ ଆସିଲେ।



(ସାପ୍ତାହିକ 'ସମୟ', ମାର୍ଚ୍ଚ, ୨୦୦୦)

# ହମିଦର ହାତ

ସହରର ଶେଷ ଆଡ଼କୁ ଯୋଉ ବିରାଟ ନାଳଟା ବାହାରି ଯାଇ ଖଣ୍ଡେ ଦୂରରେ ନଈରେ ମିଶିଚି, ସେଇ ନାଳ ଦେଇ ସହରର ପ୍ରାୟ ଚାରି ଭାଗରୁ ତିନି ଭାଗ ମଇଳା ସମସ୍ତଙ୍କ ଆଖି ପଡୁଥିବା ଓ ନାକ ଜାଣୁଥିବା ଅବସ୍ଥାରେ ବାହାରି ଯାଏ। ତାହା ଆମ ସହରବାସୀଙ୍କ ସ୍ୱାସ୍ଥ୍ୟ ପକ୍ଷେ କ୍ଷତି କାରକ ବୋଲି ମାନ୍ୟବର ହାଇକୋର୍ଟ ଗୋଟିଏ ଜନସ୍ୱାର୍ଥ ସମ୍ବଳିତ ମାମଲାର ବିଚାର କରି ରାୟ ଦେଲା ପରେ ସରକାରଙ୍କ ତରଫରୁ ଚନାଘନା ତଦନ୍ତ ଆରମ୍ଭ ହେଲା ଏବଂ ତା ପରେ ପରେ ସ୍ୱୟଂ ମୁଖ୍ୟମନ୍ତ୍ରୀ ଆସି ବେକରେ ଫୁଲମାଳ ପକେଇ ଏବଂ ନାକରେ ରୁମାଲ ଦେଇ ପ୍ରାୟ ପଚାଶ ସରିକି ଗାଡ଼ି ମୋଟରରେ ଆସିଥିବା ଅଫିସର, ପଞ୍ଚାୟତ ଚେଆରମେନ୍, ସରପଞ୍ଚ, ଓ୍ୱାର୍ଡ଼ମେମ୍ବର ଏବଂ ଜନସ୍ୱାସ୍ଥ୍ୟ ବିଭାଗ ଇଂଜିନିଅରମାନଙ୍କ ଗହଣରେ ସେଇ ନାଳ କୂଳରେ ଦୀର୍ଘ ଦୁଇ ମିନିଟ୍ ଠିଆ ହେଇ ଆକାଶବାଣୀ, ଦୂରଦର୍ଶନ ତଥା ସମ୍ବାଦପତ୍ରର ପ୍ରତିନିଧିମାନଙ୍କ ସାମନାରେ ଘୋଷଣା କରି ଗଲେ ଯେ ଏ ଜନସ୍ୱାର୍ଥ ବିରୋଧୀ ନାଳକୁ ସଫାକରି ସହରର ଗରିବ ବସ୍ତି ବାସିନ୍ଦାଙ୍କୁ ସୁନ୍ଦର ସ୍ୱାସ୍ଥ୍ୟ ପ୍ରଦାନ କରିବାକୁ ତାଙ୍କ ସରକାର ପ୍ରତିଶ୍ରୁତିବଦ୍ଧ। ସେ ଘନ ଘନ କରତାଳି ମଧ୍ୟରେ ଏକଥା ମଧ ଘୋଷଣା କଲେ ଯେ ସେ ଏ ନାଳକୁ ପୂରାପୂରି ବିଶୋଧନ କରିବା ପାଇଁ ଶହେ କୋଟି ଟଙ୍କାର ଏକ ଯୋଜନା ବିଶ୍ୱବ୍ୟାଙ୍କର ମଞ୍ଜୁରି ପାଇଁ ପଠାଇଛନ୍ତି ଏବଂ ତାହା ଆସିଗଲେ ଖୁବ୍ ଶୀଘ୍ର ଏଠି କାମ ଆରମ୍ଭ ହେବ। ଜନୈକ ସାମ୍ବାଦିକଙ୍କର ଏକ ପ୍ରଶ୍ନର ଉତ୍ତରରେ ସେ କୁଆଡ଼େ ଏ କଥା ମଧ ପ୍ରକାଶ କରିଥିଲେ ଯେ, ଏହି ଯୋଜନାକୁ କାର୍ଯ୍ୟକାରୀ କରିବା ପାଇଁ ଜାତୀୟ ତଥା ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ବ୍ୟବସାୟୀ ଗୋଷ୍ଠୀମାନେ ଆଗେଇ ଆସିଥିବାର ସୂଚନା ଆମର ହସ୍ତଗତ ହେଇଚି ଏବଂ ଆମ ସରକାର ତାକୁ ଏବେ ପରୀକ୍ଷା କରି ଦେଖୁଛନ୍ତି। କିନ୍ତୁ ସେ କ୍ଷୋଭ ପ୍ରକାଶ କରି ଆହୁରି କହିଥିଲେ ଯେ ଆମ ସରକାର କର୍ମମାତ୍ର ନାଳକୁ ସଫା କରିବା ଅପେକ୍ଷା ଅସ୍ୱାସ୍ଥ୍ୟକର ପରିବେଶ ବିରୁଦ୍ଧରେ ଜନ ସଚେତନତା ସୃଷ୍ଟି କରିବା ଉପରେ ବେଶି ଗୁରୁତ୍ୱ ଆରୋପ କରନ୍ତି। ଆସନ୍ତା ବଜେଟ୍‌ରେ ସେ ଏଥିପାଇଁ ରାଜ୍ୟ ତଥା ରାଜ୍ୟ ବାହାରର ସମସ୍ତ ଏନ୍.ଜି.ଓ ମାନଙ୍କୁ ନିୟୋଜିତ କରିବା ଉଦ୍ଦେଶ୍ୟରେ ଏକ ସ୍ୱତନ୍ତ୍ର ବ୍ୟବସ୍ଥା ରଖିବା କଥା ଚିନ୍ତା କରୁଛନ୍ତି ବୋଲି ମଧ ସାମ୍ବାଦିକମାନଙ୍କୁ କଥା ଛଳରେ କହିଥିଲେ।

ହଁ, ମୁଁ ଏହିପରି ଭାବରେ ରାଜ୍ୟ ସରକାରଙ୍କ ଦୃଷ୍ଟି ଆକର୍ଷଣ କରିଥିବା ନାଳଟି କଥା କହୁଥିଲି। ସେଇ ନାଳ କୂଳରେ ଥିବା ଦୁଇ ପୁରୁଷ ଅମଳର ବରଗଛ

ମୂଳରେ ବସେ ହମିଦ୍ ମିଆଁ। ବୟସ ତା'ର ପଚାଶ ପାଖାପାଖି। ଲମ୍ବା ଦାଢ଼ି ଛଅଇଞ୍ଚ ତଳକୁ ଝୁଲୁଥାଏ ଅସଂଯତ ଭାବରେ। ବେଳେବେଳେ ସେ ଦାଢ଼ି ସଂଯତ ମଧ୍ୟ ଥାଏ। ମାନେ ସେଦିନ ଟିକିଏ ତେଲ ମାରି ହମିଦ୍ ମିଆଁ ତାକୁ ପାନିଆରେ ଆଉଁସି ଦେଇଥାଏ। ପିନ୍ଧିଥାଏ ଲୁଙ୍ଗି। ଛକପକା ଲୁଙ୍ଗି। ଖଣ୍ଡିଏ ହାତକଟା ଫତୁଆ। ଫତୁଆ ଉପରେ ଝୁଲୁଥାଏ ଗୋଟିଏ ତାବିଜ୍ ଭଳିଆ କିଛି। ଯୋଉଥିରେ ଥାଏ ଘସିଆ ହୋଇ ଯାଉଥିବା ରୁପାର ଗୋଟିଏ ଅର୍ଦ୍ଧଚନ୍ଦ୍ର। ଲମ୍ବ, କଳା ସୂତାରେ ହମିଦ୍‌ର ଛାତି ଉପରେ ସେଇଟା ପଡ଼ିଥାଏ ସମ୍ପୂର୍ଣ୍ଣ ଭୟଶୂନ୍ୟ ହୋଇ। କିନ୍ତୁ ହମିଦ୍ କହେ, ତାବିଜ୍‌ଟା ଥିବାରୁ ସେ ନିଜେ ଭୟଶୂନ୍ୟ ହୋଇ ପଡ଼େ।

ବରଗଛ ମୂଳରେ ଥାଏ ପକ୍କା ପିଣ୍ଡି। ପିଣ୍ଡି ଉପରେ ଥାଏ କାଠଗଡ଼ ଖଣ୍ଡିଏ। ଆଉ ସେ ପାଖରେ ଗଛ ଡାଳରେ ଝୁଲୁଥାଏ କେତେଟା ଶକ୍ତ ଦଉଡ଼ି। ଆଉ ଠିକ୍ ତା'ର ବିପରୀତ ଦିଗରେ ପ୍ରାୟ ପନ୍ଦର କୋଡ଼ିଏ ଫୁଟ ବ୍ୟବଧାନରେ ଦୁଇଟା ଛୋଟ ଖୁଣ୍ଟି ପୋତା ହୋଇ ସେଥିରେ ବନ୍ଧାଥାଏ ଗୋଟାଏ ଲମ୍ବା ଦଉଡ଼ି। ଆଉ ସେ ଦଉଡ଼ିରେ—

ହମିଦ୍ ମିଆଁ ଖାସି କାଟେ। ପ୍ରତିଦିନ ରାତି ପାହିଲା ବେଳକୁ (ସୋମବାର ଓ ଗୁରୁବାର ଛାଡ଼ି) ହମିଦ ମିଆଁକୁ ସେଠି ଦେଖିବାକୁ ମିଳେ। ସେ ହାତରେ ଗୋଟାଏ ଲମ୍ବା ଛୁରି ଧରି ତାକୁ ପଥର ଦେହରେ ଘଷି ଶାଣ ଦିଏ ଓ ତା ପରେ କାଠ ଗଡ଼ଟିକୁ ପାଣିରେ ଧୋଇ ସଫା କରେ।

ଆଉ ସେ ପାଖରେ ସେ ଲମ୍ବା ଦଉଡ଼ିରେ ବନ୍ଧା ହୋଇଥାନ୍ତି ତିରିଶ ଚାଳିଶ ଖାସି। ବିଭିନ୍ନ ବୟସର ଓ ବିଭିନ୍ନ ସାଇଜର; କିନ୍ତୁ ଖାସି। ହମିଦର ସେଥିରେ ନାଆଁ ଅଛି। ସେ କେବେ ଗ୍ରାହକମାନଙ୍କୁ ଠକେନି। ସମସ୍ତଙ୍କ ସାମନାରେ ବନ୍ଧା ଥିବା ଖାସିକୁ ଗୋଟି ଗୋଟି କରି ହାଣେ, ଛାଲ ଛଡ଼ାଏ, ଅନ୍ତବୁଜୁଳା ବାହାର କରି ଗୋଟିଏ ପାଖକୁ ରଖେ ଏବଂ ତାପରେ ତାକୁ ଗଛ ଡାଳରେ ଝୁଲେଇ ସେଥିରେ ପାଣି ଢ଼ାଳି ଧୋଇ ସଫା କରେ। ତା'ପରେ ପ୍ରଥମେ ଆଗ ଗୋଡ଼, ତା'ପରେ ପଛ ଗୋଡ଼, ତା'ପରେ ମଝିରୁ, ଏମିତି ଖଣ୍ଡ ଖଣ୍ଡ କରି ଆଣି ଯେତେବେଳେ ଗ୍ରାହକମାନଙ୍କ ସାମନାରେ କୁଚୁ କୁଚୁ କରି କାଟେ, ସେତେବେଳେ ତା ହାତ ବିଜୁଳି ପରି କାମକରେ। ଦେଖିବାର କଥା ଯେ, ହମିଦ୍ ମିଆଁର ହାତର ଛୁରୀ ଯେତେ ଶୀଘ୍ର ଉଠ ପଡ଼ ହେଉଥାଏ, ଗ୍ରାହକମାନଙ୍କ ମୁହଁରେ ଖାଣ୍ଟି ଖାସିର ସଜ ମାଂସ ପାଇବାର ମାନସିକ ପ୍ରଫୁଲ୍ଲତା ସେତିକି ପ୍ରକଟି ଉଠୁଥାଏ।

ସହରରେ ଭଲ ଖାସି ମାଂସ ଯୋଗାଉ ଥିବା ଯୋଗୁ ହମିଦ୍‌ର ନାଆଁ ଅଛି। ସେ ସମସ୍ତଙ୍କୁ କହେ, ଆଲ୍ଲା କସମ୍, ମୁଁ ଆପଣଙ୍କୁ ଠକିବିନି। ଖାସି ଥିଲେ ଛୁରୀ ବାହାରିବ, ନଚେତ୍ ନାହିଁ। ମାଈ ଛେଳି କାଟିବି ? ରାମ୍ ରାମ୍। ସେ କାମ ମୋ ଦେଇ ହେଇ ପାରିବନି।

ଏଇ ଦେଖନ୍ତୁ, ସମସ୍ତଙ୍କ ସାମନାରେ ମୋର ସବୁ କାମ। କେହି ପଦେ କହିବ ? ହିମ୍ମତ ଅଛି ? ହକ୍ ପଇସା ନେବି। ଠକିବାର କଅଣ ଦରକାର ? ଏଇ ପଇସା ତ ମୋ ପେଟ ପୋଷୁଚି। ମୋ ପିଲାଛୁଆ ମୁଠେ ଖାଉଚନ୍ତି। ଖଣ୍ଡେ ପିନ୍ଧୁଛନ୍ତି।

ବେଳେବେଳେ ମେଞ୍ଚଡ଼ ଟୋକାମାନେ ମାଂସ ନେବାକୁ ଆସି ଲାଇନରେ ଠିଆ ହେବା ବେଳେ ହମିଦ୍ ମିଆଁ ସହିତ ଟାପରା ହୁଅନ୍ତି। ସେମାନେ ତାକୁ ଏମିତି କଥା କହନ୍ତି ଯେ ସେ ବାଧ୍ୟ ହେଇ ତା'ର ବ୍ୟବସାୟିକ ସାଧୁତା ଉପରେ କ୍ଷୁଦ୍ର ଭାଷଣଟିଏ ଆରମ୍ଭ କରେ। ଥରେ ଜଣେ ଯୁବନେତା, ଯେ କି ଲାଇନରେ ନ ଆସି ସଅଳ ମାଂସ ନେବାକୁ ଚାହୁଁଥିଲେ। କିନ୍ତୁ ହମିଦ ବାରଣ କରିବାରୁ ବାଧ୍ୟ ହେଇ ଲାଇନକୁ ଫେରି ଗଲେ ଏବଂ ତା ପରେ ହମିଦ୍‌ର ସାଧୁତା ଉପରେ ମନ୍ତବ୍ୟ ଦେବାକୁ ଯାଇ କହିଲେ, "ଆରେ ବାବୁ, ଖାସି ତ କାଟୁଚ, ସେଥିରେ ଆଉ ସାଧୁତା ପୁଣି କଅଣ ?"

ହମିଦ୍ ମିଆଁ ଖାଲି ତାଙ୍କ ମୁହଁକୁ ଟିକେ ଅନେଇଲା। ଏତିକି ବେଳେ ଅପେକ୍ଷାକୃତ ବୟସ୍କ ଲୋକ ଜଣେ ସେଇ ଲାଇନ ଭିତରୁ କହିଲେ, "ଆଃ, ଖାସି କାଟିଲେ ବି ସେଥିରେ ସାଧୁତା ଥାଏ। କାରଣ ସେଇଟା ମଣିଷଙ୍କ ଉପକାର ପାଇଁ। କିନ୍ତୁ ଆଜିକାଲି ତ ମଣିଷ କାଟିଦେଇ ତନ୍ଦୁର ଝୋଳ ତିଆରି କରି ଲୋକେ କହୁଚନ୍ତି ଆମ ସାଧୁତା ପୃଥିବୀରେ ବିରଳ।" ସମସ୍ତେ ହୋ ହୋ ହେଇ ହସି ଉଠିଲେ।

କିଏ ଏ କଥା କହିଲା ବୋଲି ଯୁବକ ଜଣକ ପଛକୁ ଫେରି ଅନେଇଲା ବେଳକୁ ଆଉ ଜଣେ ମନ୍ତବ୍ୟ ଦେଲେ, ହେଇ ଦେଖୁ ନାହାନ୍ତି, କୋର୍ଟ କେମିତି ସେଇ ମହାନ ଯୁବନେତା ଜଣଙ୍କୁ ହରଡ଼ ଘଣାରେ ପକେଇ ପେଷୁଚି।

ହମିଦ୍‌ର ହାତ ସେତେବେଳକୁ ଆହୁରି କ୍ଷୀପ୍ର ହେଇ ଯାଏ ଏବଂ ସେତେବେଳେ ଲଢ଼େଇ କରୁଥିବା ଶିବଙ୍କ ଷଣ୍ଢ ଅନାବଶ୍ୟକ ଭାବେ ଆକ୍ରମଣ କରୁଥିବା ପରାକ୍ରମୀ ଜନ୍ତୁଟିକୁ ତଡ଼ି ନେଉଥିବା ବେଳେ ଯେପରି ସଁ ସଁ ହେଉଥାଏ, ସେମିତି ତା ନାକ ପୁଡ଼ାରୁ ଗରମ ବାମ୍ଫ ବାହାରି ଆସୁଥାଏ।

ହମିଦ୍‌ର ଜୀବନ ବହୁ ଉତ୍‌ଥାନ ପତନ ଭିତର ଦେଇ ଗତି କରିଚି। ତାକୁ ଯେତେବେଳେ ମାତ୍ର ପନ୍ଦର ବର୍ଷ ବୟସ, ସେତେବେଳେ ତା'ର ବାପ ମାଆ ଠିକ ଦଶ ଦିନ ଭିତରେ କଥା ବାର୍ତ୍ତା ହେଇ ଆର ପାରିକୁ ପଳେଇଲେ। ହମିଦ ଏକୁଟିଆ ହେଇଗଲା। ହମିଦର ବାପର ତିନୋଟି ସ୍ତ୍ରୀଙ୍କ ଭିତରେ କେବଳ ତା' ମାଆ ହିଁ ତାକୁ ଜନ୍ମ ଦେଇଥିଲା। ତେଣୁ ସେ ଥିଲା ତା ବାପର ଏକମାତ୍ର ସନ୍ତାନ। ହମିଦର ବାହାଘର ହେଇଥିଲା, ତାକୁ ଯେତେବେଳେ ମାତ୍ର ତେର ବର୍ଷ। ତା'ର ପନ୍ଦର ବର୍ଷ ବେଳକୁ ହମିଦର ସ୍ତ୍ରୀ ତାକୁ ଗୋଟିଏ ସନ୍ତାନ ଦେଇ ଆଉ ଗୋଟିକୁ ପେଟରେ ଧରି ସାରିଲାଣି। ଏ ଅବସ୍ଥାରେ ଦୁଇଟି ବିଧବା ମାଆ, ଗୋଟିଏ ସ୍ତ୍ରୀ ଓ ଗୋଟିଏ ବର୍ଷକର ପୁଅକୁ ନେଇ ହମିଦକୁ ଚାରିଆଡ଼ ଅନ୍ଧାର ଦେଖାଗଲା।

କେମିତି ଏ ସଂସାର ଚଳିବ? କେମିତି ସେ ସେମାନଙ୍କୁ ଗଣ୍ଡେ ଖାଇବାକୁ ଦେବ ଓ ଖଣ୍ଡେ ପିନ୍ଧିବାକୁ ଦେବ? କୋଉଠୁ ଆଣିବ? କିଏ ତା'ର ସାହା ଭରସା ଅଛି?

ସେତେବେଳେ ସହରର ଜଣେ ମୁଖିଆ ଲୋକ ହମିଦକୁ ଅନେକ ସାହାଯ୍ୟ କରିଥିଲେ। ସେ କହିଲେ, ହମିଦ! ଆଜିକାଲି ଯୁଗରେ ଚାକିରିଟିଏ ପାଇବା କାଠିକର ପାଠ। ସମ୍ପୂର୍ଣ୍ଣ ଅସମ୍ଭବ କଥା। ତେଣୁ ତୁ ଯଦି ରାତିରେ ଚୌକିଦାରୀ କାମ କରୁ, ତେବେ ତୁ ଅନ୍ତତଃ ମାସକୁ ହଜାରେ କି ଦି'ହଜାର ଖୁସିରେ ରୋଜଗାର କରିପାରିବୁ।

କେମିତି ଚାଚା? ହମିଦ୍ ପଚାରିଲା ଆଶ୍ଚର୍ଯ୍ୟ ହୋଇ।

ଆରେ କେମିତି ଆଉ କଅଣ? ଆଜିକାଲି ରାତିରେ ଏ ସାଇରେ ଚୋରି ଅନେକ ବଢ଼ି ଗଲାଣି। ଯୋଉ ଦେଶରେ ପୁଲିସ-ଚୋର ହାତ ଧରାଧରି ହୋଇ ଥାଆନ୍ତି, ସେଠି ନିଜ ସୁରକ୍ଷା ନିଜ ହାତକୁ ନେବାକୁ ହୁଏ। ମୁଁ ସାଇବାଲାଙ୍କୁ ଏ କଥା ବୁଝେଇ ଦେଇଚି। ତେଣୁ ତୁ ଦୈନିକ ରାତି ବାରଟା ହେଲକୁ ହୁଇସିଲ୍ ଓ ଠେଙ୍ଗାଟିଏ ଧରି ବାହାରି ପଡ଼ିବୁ। ରାତିଯାକ ଏ ସାଇ ସେ ସାଇ ହୋଇ ବୁଲିବୁ। ଦେଖିବୁ ଚୋରିକୁ ଚୋରି କମିବ ଏବଂ ତା ସହିତ ମାସ ଶେଷରେ ତୋତେ ବେଶ କିଛି ପଇସା ବି ମିଳିବ।

ହମିଦ ତାଙ୍କ ମୁହଁକୁ ହାଁ କରି ଅନେଇ ରହିଲା।

ଚାଚା କହିଲେ, ଅନେଇଚୁ କଅଣ ମ? ଏଇ ମନେକର, ଆମ ସାଇରେ ପାଞ୍ଚଶହ ଘର ଅଛି। ସେଥିରୁ ଶହେ ଘର ଯଦି ତୋତେ ଦଶ ଦଶ କରି ଦିଅନ୍ତି, ତେବେ ହଜାରେ ଟଙ୍କା ମିଳିଲାଣି। କମ କଥା। ଯା, ଏଇ ସଂକ୍ରାନ୍ତିରୁ କାମ ଆରମ୍ଭ କରିଦେ। ତା' ପରେ ଦେଖାଯିବ।

କଥାଟା ହମିଦ ମନକୁ ପାଇଲା। ସେ କାମ ଆରମ୍ଭ କରିଦେଲା। ରାତି ବାରଟା ବେଳେ ଯେତେବେଳେ ସେ ଘରେ ଖାଇ ପିଇ ଶୋଇବାର କଥା, ସେତେବେଳେ ସେ ହୁଇସିଲ ଓ ଠେଙ୍ଗାଟାଏ ଧରି ଘରୁ ବାହାରି ଯାଏ ଯେ ଯାଏ। ଆସେ ରାତି ପାହିଲେ।

ପ୍ରଥମେ ପ୍ରଥମେ କଥାଟା ତା ସ୍ତ୍ରୀ ଅଞ୍ଜୁମ୍‌କୁ ଗୋଟାଏ ଅଜନୋପାୟ ରାସ୍ତା ବୋଲି ମନେ ହେଉଥିଲେ ମଧ୍ୟ ପରେ ସେ ଭାବିବାକୁ ଲାଗିଲା, ହମିଦ୍ ଯେତେ ଯାହା ହେଲେ ମଧ୍ୟ ପୁରୁଷ ପିଲା। ଏବେ ବି ତା ଉପରେ ଏ ସାଇର ଅନେକ ଝିଅବୋହୂଙ୍କ ନଜର ଯେ ନ ଥିବ, ସେ କଥା କିଏ କହିବ? ପୁରୁଷଙ୍କୁ ବି କୋଉ ବିଶ୍ୱାସ। କୋଉ ଠିକଣା ଅଛି ଯେ ସେ ରାତି ଡ୍ୟୁଟିରେ ଯାଉଚି କହି ଆଉ କାହା ଘରେ ରାତିଟା କଟେଇ ସକାଳୁ ମୋ ପାଖକୁ ଫେରି ଆସୁ ନ ଥିବ? କୋଉ ବିଶ୍ୱାସ ଅଛି, ସେ ମାସକ ପରେ ମୋ ହାତରେ ହଜାରେ ଟଙ୍କା ସହିତ ମୋ ପରି ଆଉ ଗୋଟାଏ ଆଣି ପହଞ୍ଚେଇ ନ ଦେବ? ସେତେବେଳେ ସେଇ ହମିଦ୍ କହିବ ଟଙ୍କା ତ ଆଣୁଚି। ତେଣୁ ତା ସାଥିରେ ଆଉ ଗୋଟିଏ

ଘରକୁ ଆଣିଲେ ତୋର କଅଣ ଯାଏ ଆସେ ସେଥିରେ? ତୋ ଥାଳିରୁ ତ କେହି ମୁଠାଏ ଉଠେଇ ନେଉନି ?

ନିଜ ମନ କଥା ନିଜ ଛାତିରେ ବେଶି ଦିନ ଅଞ୍ଜୁମ ଲୁଚେଇ ରଖି ପାରିଲାନି। ଦିନେ ହମିଦ୍ ରାତିରେ ଘରୁ ବାହାରି ଯିବା ବେଳେ ତାକୁ ଠେଙ୍ଗା ଓ ହୁଇସିଲ୍‌ଟା ବଢ଼େଇ ଦେଉ ଦେଉ ଅଞ୍ଜୁମ ପଚାରିଲା, ସାରା ରାତି ବୁଲୁ ବୁଲୁ ତମେ ତ ଥକି ପଡୁଥିବ ?

ହମିଦ୍ ମୁହଁ ଶୁଖେଇ କହିଲା, ଏଥିରେ ଆଉ ପଚାରିବାର କଅଣ ଅଛି ? କଷ୍ଟ ହଉଚି ନିଶ୍ଚୟ। କିନ୍ତୁ କଷ୍ଟ ନ କଲେ କେମିତି ଚଳିବ କହିଲୁ ?

ଅଞ୍ଜୁମ ପୁଣି କହିଲା, ବେଶି ରାତିରେ ନିଦ ମାଡ଼ିଲେ କି ଥକି ପଡ଼ିଲେ, କାହାରି ପିଣ୍ଡାରେ ଟିକେ ଥକ୍‌କା ମେଣ୍ଟଉନ ?

ହମିଦ୍ ତା ସ୍ତ୍ରୀର ସରଳ ସୁନ୍ଦର ମୁହଁଟାରେ ଖେପି ହେଇ ବସିଥିବା ସରୁ ନାକଟାକୁ ଟିକେ ଚିପିଦେଇ କହିଲା, ହୁଣ୍ଡିଟାଏ। ରାତି ଅଧରେ କାହା ପିଣ୍ଡାରେ ଟିକେ ବସିଗଲେ ତା ପରଦିନ ମୋତେ ଆଉ ଏ ରାସ୍ତାରେ ଚଲେଇ ଦେବେ। ମିଛଟାରେ ଓଲଟା ଦୋଷ କିଆଁ ମୁଣ୍ଡେଇବି ?

ସେ ଚାଲିଗଲା। କିନ୍ତୁ ଅଞ୍ଜୁମକୁ ଅନେକ କଥା ଚିନ୍ତା କରିବାକୁ ଖୋରାକ ଯୋଗେଇ ଦେଇଗଲା।

କଅଣ ଯା ମାନେ? ଅଃ, ଭାରି ଇଏ। ଇମିତି କଅଣ ହଉନି କି? ସଲା ସୁତରା ହେଇ ଦି'ଜଣ ଯଦି ଓଳିତଳେ—ପୁଣି ଭାବିଲା, ନା ନା ହମିଦଟା ତ ସେମିତି ନୁହେଁ। ତାକୁ ଇମିତି ସନ୍ଦେହ କରିବା ଠିକ୍ ନୁହେଁ। ତଥାପି କେତେବେଳେ କୋଉ କଥା। ରାସ୍ତାରୁ ଟାଣି ନବା ଲୋକ ବି ତ ଏଇ ସହରରେ ଅଛନ୍ତି। ହେ ଆଲ୍ଲା, ମୋ ପିଲାକୁ ତୁ ଦେଖୁଥା।

କାମଟା କିନ୍ତୁ ବେଶି ଦିନ ଚାଲିନାନି। ମାସ ଶେଷରେ ହମିଦ ଆସି ଫେର ମୁଖିଆଙ୍କ ପିଣ୍ଡାତଳେ ଠିଆ ହେଲା। କହିଲା, ଚାଚା ଇଏ କଅଣ? ତୁମେ ତ ଅତି କମ୍‌ରେ ହଜାରେ ଟଙ୍କା ମିଳିବ ବୋଲି କହିଥିଲ। ଏବେ ଏଇ ଦେଖ, ହଜାରେ ଥର ଦୌଡ଼ିଲା ପରେ ବି ଶହେ ପୂରିଲାନି। କହିଲେ, କି ଚୌକିଦାର ହେ? ମାସକୁ ଥରେ ଆସିଚ କି ନାହିଁ, କହୁଛି ଦଶ ଟଙ୍କା ଦିଅ। ଆଉ ଜଣେ କହିଲା, ହଇରେ ତୁ ଯଦି ଜଗିଥିଲୁ, ତେବେ ସେଦିନ ରାତିରେ ଆମ ବାରିରୁ ଏଡ଼େ ସୁନ୍ଦର ସୁନ୍ଦର ଗୋଲାପ ଫୁଲ ସବୁ କିଏ ନେଇଗଲା? ତୁ କେମିତି ନ ଜାଣିଲୁ? ତାଙ୍କ ସ୍ତ୍ରୀ ଶୁଣେଇ ଶୁଣେଇ କହିଲେ, ଆଜିକାଲି ଯୁଗରେ ଚୌକିଦାରମାନେ ହିଁ ଚୋର। କାହାକୁ ବିଶ୍ୱାସ ?

ହମିଦ୍ ସେଇ ଦିନଠୁଁ ଆଉ ରାତି ଡିଉଟିରେ ଗଲା ନାହିଁ। ହୁଇସିଲ୍ ଓ ଠେଙ୍ଗାକୁ ସେ ସେଇଦିନ ନିଜ ଘରେ ଗମ୍ଭୀରା ଭିତରକୁ ଏକ ରକମ ଫୋପାଡ଼ି ଦେଲା। ସେଇ ଦିନଠୁଁ ସେ ତାର ମୂଳ ବେଉସାକୁ ଫେରି ଆସିଲା। ଯଦିଓ ସେ

ଏ କାମଟାକୁ ମୂଳରୁ ଭଲ ପାଉ ନ ଥିଲା, ତଥାପି ତା'ର ଆଉ ଉପାୟ ନଥିଲା। ସେଇ ଦିନଠୁଁ ସେ ସେଇଠି ବସୁଚି। ପ୍ରଥମେ ବର୍ଷେ ଖଣ୍ଡେ ଅବଶ୍ୟ ତା'ର କାମ ଭଲ ଚାଲିଲାନି। କିନ୍ତୁ ପରେ ପରେ ତା ପ୍ରତି ଲୋକଙ୍କର ଗୋଟେ ବିଶ୍ୱାସ ଆସିଗଲା। ସମସ୍ତେ ଜାଣିଲେ ଯେ ସେଠୁ ଆଖି କାନ ବନ୍ଦ କରି ଜିନିଷ ଆଣିଲେ ବି ଠକି ଯିବାର ପ୍ରଶ୍ନ ନାହିଁ।

ଗୃହିଣୀମାନେ କହନ୍ତି, ହମିଦ ମିଆଁର ମାଲ ଚୁଲିରେ ପଡୁ ପଡୁ କାମ ଶେଷ। ନିଅ ବାଢ଼ି ଥୋଇଦିଅ। କିନ୍ତୁ ଆଉ କୋଉଠିକାର ମାଂସ ହେଇଥିଲେ ଆଉ କଥା ନାହିଁ। ଅନେଇ ଥାଅ ଘଡ଼ିକୁ।

ହମିଦ୍ ମିଆଁର ଏବେ ଚାରୋଟି ପିଲା। ଦୁଇଟି ପୁଅ ଓ ଦୁଇଟି ଝିଅ। ସମସ୍ତେ ପାଠ ପଢୁଛନ୍ତି। ବଡ଼ଟା ଏଇ ବର୍ଷ କଲେଜକୁ ଗଲା। ବାକି ସବୁ ତା' ତଳେ ତା' ତଳେ। ସେ ଠିକ କଲା, ତା' ପରି ତା' ପିଲାମାନେ ଯେମିତି ମୂର୍ଖ ନ ହୁଅନ୍ତି। ଅଳ୍ପ ଅଳ୍ପ ପାଠ ପଢ଼ିଥିଲେ ବି କିଛି ନା କିଛି ଚାକିରି ମିଳିଯିବ। ତା' ପରେ ଦେଖାଯିବ।

ଦେଖାଯିବ ଆଉ କଅଣ? ଆଉ ବର୍ଷେ ଦି' ବର୍ଷ ଭିତରେ ଗୋଟାଏ ଝିଅକୁ ନ ଉଠେଇଲେ ଚଳିବନି। ତା ପରେ ଆଉ ଗୋଟାଏ। ଆସନ୍ତା ପାଞ୍ଚ ଛଅ ବର୍ଷ ହମିଦକୁ ଅନେକ କଷ୍ଟ ସହିବାକୁ ପଡ଼ିବ। ଅନ୍ତତଃ ଦ୍ୱିତୀୟ ଝିଅଟା ଉଠି ଯିବାଯାଏ। ଆଉ ପୁଅ ଦି'ଟାଙ୍କ କଥା ତ? ସେ ତାଙ୍କ ରାସ୍ତା ଦେଖିବେନି। ମୋ କାମ ତ ସେମାନଙ୍କ ପାଠପଢ଼ା ଯାଏ।

ଶୀତଦିନର ଲେଉଟାଣି ଖରାରେ ପିଠି ଦେଖେଇ ହମିଦ ଦାଣ୍ଡ ପିଣ୍ଡାଟାରେ ଶୋଇଥିଲା ବେଳେ ଖଣ୍ଡେ ଦୂରରେ ଖୁଣ୍ଟକୁ ଆଉଜି ବସିଥିଲା ଅଞ୍ଜୁମ୍। ଦିନେ ଆଣ୍ଠୁ ପର୍ଯ୍ୟନ୍ତ ଲମ୍ବିଥିବା କଳା ମୁଚୁ ମୁଚୁ ଗହଳ ବାଳ ଏବେ ପତଳା ହୋଇ ଯାଇଥିବାରୁ ଖୋଲା ପିଠିଟା ଉପରେ ଅଣେଇ ହେଇ ପଡ଼ିଚି। ମଳିଚିଆ ଖରାରେ ସେଥିରୁ କେଇଟା ଚିକ୍ ଚିକ୍ କରି ଉଠିଲା। ମାଣ୍ଡି ଉପରୁ ମୁଣ୍ଡ ଉଠେଇ ହମିଦ୍ କହିଲା, ତୋ ବାଳ ତ ପାଚି ଗଲାଣି ଲୋ ଅଞ୍ଜୁମ୍।

ଏତେ ଦିନେ ଦେଖୁଚ? ସେମିତି ତାକୁ ପଚ୍ଛ କରି କହିଲା ଅଞ୍ଜୁମ୍। କିଛି ନ ଶୁଣିଲା ପରି ହମିଦ ଦେଖୁଥିଲା ଗଣ୍ଡିସୁନା ପରି ଅଞ୍ଜୁମ୍ର ଖୋଲା ପିଠିଟା ଯେମିତି ଶେଷ ବସନ୍ତର ପାଚିଲା ପତ୍ର ପରି ତଳକୁ ଓହଳି ପଡ଼ିଚି। ସେ ସେଠୁ ଆଖି ଫେରେଇ ଆଣିଲା, ଯେମିତି ସେ ଆଉ କିଛି ଦେଖିବାକୁ ଚାହୁଁ ନଥିଲା।

ସେଦିନ ଥିଲା ରବିବାର। ହମିଦର ଚାରିପଟେ ଏତେ ଲୋକ ଭିଡ଼ ଯେ କାହିଁରେ କଅଣ? ଲାଇନ ତ ଏତେ ଲମ୍ବ ଯେ ନାକ କୂଳେ କୂଳେ କାହିଁ କେତେ ଦୂରକୁ ଲମ୍ବି ଯାଇଚି। ହମିଦକୁ ମୋଟେ ଫୁରୁସତ୍ ନାହିଁ। ଯେତିକି ଶୀଘ୍ର ତା'ର ହାତ ଉଠପଡ଼୍ ହେଉଥାଏ, ସେତିକି ତା ଦେହରୁ ଗମ୍ ଗମ୍ ଝାଳ ବୋହି ପଡୁଥାଏ।

ପ୍ରତି ରବିବାର ହମିଦ୍ ଅନ୍ତତଃ ପଚାଶ ଷାଠିଏଟା ଖାସି କାଟେ। ଦିନ ଗୋଟାଏ ଯାଏ ତା'ଠି ଭିଡ଼ କମେନି। ଲୋକ ନ ପାଇବା ଯାଏ ଉଠନ୍ତି ନି ମଧ୍ୟ।

ଏମିତି ଏକ ପ୍ରଚଣ୍ଡ ଲୋକ ଗହଳି ଭିତରେ କେହି ଜଣେ ଗୋଟେ ଜିପରୁ ଓହ୍ଲାଇବାର ହମିଦ୍‌କୁ ଜଣା ପଡ଼ିଲା। ପୁଲିସ ଜିପ୍ କି ମ୍ୟୁନିସିପାଲଟି ଜିପ୍ କିମ୍ବା ଅନ୍ୟ ବିଭାଗର ଗାଡ଼ି ହୋଇଥିବ, ଯୋଉମାନେ ଇମିତି ବରାବର ସମୟ ଅସମୟରେ ଆସି ମାଂସ ନେଇ ଯାଆନ୍ତି। ହମିଦ୍ ଅନେକ ସମୟରେ ସେମାନଙ୍କ ଆସିବା ଖବର ଆଗରୁ ପାଇଥାଏ। ତେଣୁ ତାଙ୍କ ପାଇଁ ସେ ଆଗରୁ ଅଲଗା ମାଂସ କାଟି, ଅଧିକା କଲିଜା ଭାଗ ବଢ଼େଇ ରଖି ଦେଇଥାଏ। ତାଙ୍କ ଲୋକ ଆସିଲା ମାତ୍ରେ ସେଇଟା ସେ ତାଙ୍କ ହାତକୁ ବଢ଼େଇ ଦିଏ ଏବଂ ସେମାନେ ଯାହା ଦିଅନ୍ତି, ତାକୁ ତା ନିଜ ବେକରେ ଝୁଲୁଥିବା କନା ଥଳିରେ ନ ଗଣି ପୂରେଇ ଦିଏ। କାରଣ ସେ ଜାଣିଥାଏ ଯେ ଏ ପଇସାକୁ ଗଣିଲେ ହିଁ ମନ ଖରାପ ହେବ।

କେବେ କେବେ ଏମିତି ବି ହୁଏ, ଲୋକଟି ହାତକୁ ମାଂସ ନେଲା ପରେ ହମିଦ୍‌କୁ ଟିକେ ଅନାଏ ଏବଂ ଅତ୍ୟନ୍ତ ସ୍ୱାଭାବିକ ଗଳାରେ କହେ, ''ଯାଉଛି''। ଆଉ କାଳ ବିଳମ୍ବ ନକରି ହମିଦ ଗଣି ଓଟାରି ତା'ର ଓଠ ଦୁଇଟାକୁ ଟିକେ ମୋଡ଼େଇ ଦେଇ କହେ ''ଜୀ...ଜୀ''।

ସେଦିନ ବି ସେମିତି ହମିଦ୍ ମୁଣ୍ଡ ଉଠେଇ ନ ଦେଖିଲେ ବି ବେଶ୍ ଜାଣି ପାରିଲା ଯେ ବାବୁ ଜଣକ ଗାଡ଼ିରୁ ଓହ୍ଲେଇ ସିଧା ତା ସାମନାକୁ ଆସି ଲୋକ ଗହଳିର ଭିଡ଼ ଠାରୁ ଟିକିଏ ଛାଡ଼ି ଠିଆ ହେଲେ। ସେ ଯେମିତି ଜଣେଇ ଦେବାକୁ ଚାହୁଁଥିଲେ ଯେ ଏଇ ଯେଉଁ ଲୋକମାନେ ଲାଇନ ଲଗେଇଚନ୍ତି ଗୋଟାଏ ଖାସିର କିଛି ଅଂଶ ନେଇ ଯିବାକୁ, ମୁଁ ସେଥିପାଇଁ ଆସିନି। ମୁଁ ଏଇ ସ୍ୱତନ୍ତ୍ର ଇଲାକାର ଲୋକ ଏବଂ ମୋର ସେଆର ସ୍ୱତନ୍ତ୍ର।

ସେ ଠିଆ ହେଲେ ଏବଂ ପକେଟରୁ ବାହାର କରି ସିଗାରେଟରେ ନିଆଁ ଲଗେଇଲେ।

ହମିଦ ମନେ ମନେ ଚିନ୍ତା କରିବାକୁ ଲାଗିଲା, ଏମିତିକା ଭଦ୍ରଲୋକଙ୍କୁ ସେ ଆଗରୁ କେବେ ଦେଖିଥିଲା ପରି ମନେ ପଡୁନି କିମ୍ବା ଏମିତିକା ଲୋକଙ୍କ ସହିତ ସେ କେବେ ଆଗରୁ କାରବାର କରିଥିବାର ମନେ ପଡୁନି। ନୂଆ ଅଫିସର ହୋଇଥିଲେ ଘରକୁ ଡକେଇ ଆଆନ୍ତେ କିମ୍ବା ତାଙ୍କ ପିଅନ ମୋ ଘରକୁ ଆସି ଥାଆନ୍ତା।

କଳେ ଧୂଆଁ ଆକାଶକୁ ଛାଡ଼ି ବାବୁ ଜଣକ କହିଲେ, ''ହମିଦ୍ ମିଆଁ କିଏ ? ତୁମେ ?''

''ଜୀ ହଜୁର।'' ହମିଦର ହାତ ସେମିତି ଚାଲିଥାଏ ଅନବରତ ଏବଂ ତା'ର ମୁଣ୍ଡଆଏ ତଳକୁ। ଯେତେ ଯାହା କଥା ହେଲେ ମଧ ହମିଦର ହାତ କେବେ ବନ୍ଦ ହୁଏନି। ଗରାଖମାନଙ୍କୁ ଅନାବଶ୍ୟକ ଭାବେ ସେ ଅପେକ୍ଷାରେ ଝୁଲେଇ ରଖେନି।

''ମୁଁ ମ୍ୟୁନିସପାଲିଟିରୁ ଆସିଚି। ଆଦେଶ ହେଇଚି, ତୁମେ ଏ ଦୋକାନ କାଲିଠୁଁ ବନ୍ଦ କରିବ।'' ସେ ଆଗ ଅପେକ୍ଷା ଟିକିଏ ଅଧିକ ଗମ୍ଭୀର ହେଇ ଏ କଥା କହିଲେ।

"କାହିଁକି ହଜୁର ?" ହମିଦ୍‌ର ହାତ ବନ୍ଦ ହେଇଗଲା । ନାହିଁ ନ ଥିବା ମେଘରେ ଯିମିତି ବଜ୍ରଟା ହଠାତ୍ ଗର୍ଜନ କରି ଉଠେ । ହମିଦ୍ ମୁହଁ ଟେକି ତାଙ୍କୁ ଅନେଇଲା ଏବଂ ପୁଣି ଥରେ ପଚାରିଲା, "ହଜୁର, ମୋ ଦୋଷ ?"

ବାବୁ ଜଣକ ଟିକେ ହସି ପକେଇଲେ । ବଡ଼ ସ୍ୱାଭାବିକ ସେ ହସ । ହମିଦର ଆତୁରତାକୁ ସେ ସ୍ୱାଭାବିକ ହସ ପରିହାସ କରୁଥିଲା ।

ପଥର ମାଡ଼ ଖାଇ କୂଅ ଭିତରେ ବେଙ୍ଗ ଆତ୍ମରକ୍ଷା ପାଇଁ ଚାରିଆଡ଼େ ଡେଇଁ ବୁଲୁଥିଲା ବେଳେ ଉପରେ ଠିଆ ହେଇ ପିଲାମାନେ ଯିମିତି ହସନ୍ତି, ବାବୁମାନେ ଇମିତି ବରାବର ହସନ୍ତି । ସେ ହସରେ ଗୋଟାଏ ଆରିଷ୍ଟୋକ୍ରେସି ଥାଏ । ଖାଲି ଓଠ ଦି'ଟା ଦି'ପାଖକୁ ମେଲି ହେଇ ଯାଏ ।

ବାବୁ ଜଣକ ସେମିତି ହସି ହସି କହିଲେ, "ନାଇଁମ, ସେମିତି କିଛି ନୁହେଁ । ତମେ କାଲିଠୁଁ ଏଠି ଏ କାରବାର ବନ୍ଦ କରିବ । ଏଥିରେ ଚିନ୍ତା କରିବାର କଅଣ ଅଛି ? ଭାବିବାର କଅଣ ଅଛି ?"

କଥାଟାକୁ ସରଳ କରିବାକୁ ଯାଇ ସେ ପୁଣି କହିଲେ, "ନା ନା ତୁମର କିଛି ଦୋଷ ଅଛି ବୋଲି ମୁଁ କହୁନାହିଁ । ତମର ମୋଟେ କିଛି ଦୋଷ ନାହିଁ । ତେବେ ଜାଗାଟା ତ ମ୍ୟୁନିସିପାଲିଟିର । ତମେ ତାଙ୍କ ଜାଗାରେ–"

ହମିଦର ପାଟି ଖନି ମାରି ଆସିଲା । ଆଜିକି ଦୀର୍ଘ ଚାଳିଶ, ପଚାଶ କି ଆହୁରି ବେଶି କାଳ ହେଲା ଏ କାରବାର ଏଇଠି ଚାଲି ଆସୁଚି । ତା ବାପ ଅମଳରୁ । ହୁଏତ ତା ଆଗରୁ ମଧ୍ୟ ଏ କାମ ଏଇଠି ହେଉଥିଲା, ସହରବାସୀଙ୍କ ପାଇଁ । ଯା' ଭିତରେ ରାଜାଙ୍କ ଅମଳ ଯାଇ ଦେଶ ସ୍ୱାଧୀନ ହେଇ ସାରିଲାଣି । ଯୋଉ ରାଜା ଯେତେବେଳେ ରତ୍ନ ସିଂହାସନରେ ବସୁଥିଲେ ଏବଂ ମଣିମୁକ୍ତା ଖଚିତ ମୁକୁଟ ପିନ୍ଧି ତାଙ୍କ ପ୍ରାସାଦର ବାଲକନି ଉପରେ ଠିଆ ହେଇ ପଡ଼ିଲା ମାତ୍ରେ ତାଙ୍କ ସିଂହଦ୍ୱାର ପାଖରେ ରାସ୍ତା ଉପରେ, ଶହ ଶହ ଲୋକ ଧୂଳିରେ ଲୋଟିପଡ଼ି ରାଜାଙ୍କୁ ପ୍ରଣାମ ଜଣାଉଥିଲେ, ସେ ରାଜା ସେତେବେଳେ ହମିଦ୍‌ର ବାପା ଗୋସପାଙ୍କୁ ସେ ଖୋଲା ଆକାଶ ତଳୁ ମାଟି ଚାଖଣ୍ଡକରୁ କେବେ ଉଠି ଯିବାକୁ କହି ନ ଥିଲେ ।

ଆଉ ଆଜି ? ଦେଶ ସ୍ୱାଧୀନ ହେଇଚି ସିନା, ମଣିଷକୁ ସ୍ୱାଧୀନ ଭାବରେ କିଛି କରିବାକୁ ବା କହିବାକୁ ଅଧିକାର ଦିଆ ଯାଇନି ।

ସେ ଆଶ୍ଚର୍ଯ୍ୟ ହେଇଗଲା । ... ହାଁ କରି ତାଙ୍କ ମୁହଁକୁ ଅନେଇ ରହିଲା । ସେ ପୁଣି ଥରେ ବିନୟ ହେଇ ପଚାରିଲା, "ହଜୁର, ମୁଁ ତ କିଛି ବୁଝି ପାରୁନାହିଁ । ମୋର ଦୋଷ ନାହିଁ ଅଥଚ..."

"ଆମେ କଅଣ କରିବୁ ?" ବାବୁ ଜଣକ ପେଣ୍ଟ ପକେଟରେ ହାତ ପୂରେଇ କହିଲେ, "ଆମକୁ ଯେତିକି ଅର୍ଡ଼ର ମିଳିଚି, ସେତିକି କହିବୁଁ ?"

ହମିଦ୍ ମିଆଁ ଛୁରୀଟି ତଳେ ଥୋଇ ଦେଇ ଠିଆ ହେଇ ପଡ଼ିଲା । ଦୁଇହାତ ଯୋଡ଼ି ସେ ବାବୁଙ୍କୁ କହିଲା, "ହଜୁର ନିଶ୍ଚୟ ମୋର କିଛି ଦୋଷ ଥିବ ।

ମୁଁ ମୋ ଅଜାଣତରେ ହୁଏତ ବାବୁମାନଙ୍କୁ କିଛି କେତେବେଳେ କହି ଦେଇଥିବି। ତାଙ୍କୁ ନ କହିଥିଲେ, ତାଙ୍କ ପିଲାଙ୍କୁ କି ତାଙ୍କ ଚାକର ଚାକରାଣୀଙ୍କୁ। ହଜୁର। ସବୁ ଦୋଷ ମୋର। ମୋତେ ଆପଣ କ୍ଷମା କରି ଦିଅନ୍ତୁ। ନଚେତ୍ ସେ କିଏ କହନ୍ତୁ, ମୁଁ ଏଇନେ ତାଙ୍କ ଘରକୁ ଯାଇ ତାଙ୍କ ପାଦ ତଳେ ପଡ଼ିଯିବି। କ୍ଷମା ମାଗିବି। ମୁଁ ଗରିବ ଲୋକ। ବଡ଼ କଷ୍ଟରେ ପେଟ ପୋଷୁଚି ହଜୁର। ଛଅ ପ୍ରାଣୀର କୁଟୁମ୍ବ। ଏଠୁ ଉଠି ଗଲେ ସେମାନେ–"

ହମିଦର ଗଳା ବନ୍ଦ ହେଇ ଆସିଲା। ଗୋଟାଏ ଆଶଙ୍କା ଓ ଅହେତୁକ ଆବେଗରେ ସେ ବାବୁଙ୍କ ହାତ ଦି'ଟାକୁ ଧରି ନିଜ ଛାତିରେ ଜାକି ଧରିଲା ଏବଂ କହିଲା, "ହଜୁର ମୋତେ ଟିକିଏ ଦୟା କରନ୍ତୁ।"

ଏତିକିବେଳେ କେହି ଜଣେ ଭିଡ଼ ଭିତରୁ କହିଲା, "ଆଜ୍ଞା ହମିଦ୍ ମିଆଁ ତ ସେମିତିକା ଲୋକ ନୁହେଁ। ଆମେ ତ ତାକୁ ବରାବର ଦେଖି ଆସୁଛୁ।"

ବାବୁ ଜଣକ ହମିଦର ହାତରୁ ନିଜ ହାତକୁ ମୁକୁଳାଇ କହିଲେ, "ଆରେ ନା ନା ସେମିତି କିଛି ନୁହେଁ। ତମର ଦୋଷ କାହିଁକି ହେବ? ତାପରେ ସେ ହସି ହସି ଲୋକମାନଙ୍କ ଆଡ଼କୁ ଚାହିଁ କହିଲେ, ଆପଣମାନେ ଦୟାକରି ମୋତେ ଭୁଲ ବୁଝନ୍ତୁ ନାହିଁ। ଯାହା ସରକାରୀ ନିର୍ଦ୍ଦେଶ ମୁଁ ତାକୁଇ କାର୍ଯ୍ୟକାରୀ କରାଏଁ।"

ତା' ପରେ ଛେପ ଢୋକି ସେ କହିଲେ, "କଥାଟା କଅଣ କି, ସରକାର ସ୍ଥିର କରିଛନ୍ତି, ଏଇଠି, ଏଇ ବରଗଛ ମୂଳେ ଆମ ଜାତିର ମହାନ ନେତା ତଥା ପରଲୋକଗତ ପ୍ରଧାନମନ୍ତ୍ରୀଙ୍କର ଗୋଟିଏ ମାର୍ବଲ ମୂର୍ତ୍ତି ସ୍ଥାପିତ ହେବ ଏବଂ ତାକୁ ଆସନ୍ତା ସ୍ୱାଧୀନତା ଦିବସ ଦିନ ହିଁ ଆମ ମୁଖ୍ୟମନ୍ତ୍ରୀ ନିଜେ ଆସି ଉନ୍ମୋଚନ କରିବେ।" ସେ ସବୁଯାକ ଦାନ୍ତ ଦେଖେଇ ପୁଣି ଥରେ ହସି ଉଠିଲେ। ହମିଦ୍ ମିଆଁ ସ୍ତମ୍ଭୀଭୂତ ହେଇଗଲା। ତା ଦେହଟା ପାଚି ଲାଲ ହେଇ ଗଲାଣି ଯେମିତି।

ସେ ଥରେ ଜନତା ଆଡ଼କୁ ଚାହିଁ ଦେଲା ଏବଂ ନୀରବରେ ନିଜ ଜାଗାକୁ ଫେରି ଆସିଲା। ସେ ନିଜ ଜାଗାରେ ବସି ପଡ଼ି ପୁଣି ଥରେ ତା'ର ଦାଢ଼ୁଆ ଛୁରୀଟାକୁ ଚାହିଁ ପରଖି ନେଲା ବେଳକୁ ବାବୁ ଜଣକ କହିଲେ, "ତମେ ମୋ ଉପରେ ରାଗନା। ମୋ କାମ ମୁଁ କରିବାକୁ ଆସିଚି। ଏଇ ସମସ୍ତଙ୍କ ସାମ୍ନାରେ ମୁଁ ସରକାରୀ ଆଦେଶ ତୁମକୁ ଶୁଣାଇ ଦେଲି।"

ହମିଦ୍ ତାଙ୍କ ଉପରୁ ଆଖି ଫେରେଇ ଆଣି ଖାସିର ସେ ପଞ୍ଜରା ହାଡ଼ ଉପରେ ଖୁବ୍ ଶକ୍ତ ଚୋଟ ପରେ ଚୋଟ ମାରି ଚାଲିଲା। ସେ ବାବୁଙ୍କର ଆଉ କୌଣସି କଥା ଯେମିତି ତା' କାନରେ ପଡୁ ନ ଥାଏ କିମ୍ବା ସେଥିପ୍ରତି ତା'ର ମୋଟେ ନିଘା ନଥାଏ।



(ଝଙ୍କାର, ଅଗଷ୍ଟ–୧୯୯୬)

# ଅପହଞ୍ଚ ଇଲାକା

ମୁଁ ସେ ପିଲାଟିକୁ ବରାବର ସେଇଠି ଦେଖେଁ। ସେଇ ମାର୍କେଟକୁ ପଶିବାର ଗେଟ୍ ପାଖରେ—ଯେଉଁଠି ଏବେ ଗୋଟାଏ ସିମେଣ୍ଟର ଶିଢ଼ି କରି ଦିଆ ଯାଇଛି—ଦୁଇ ଚାରିଟା ପାହାଚ ଉପରକୁ ଉଠି ପୁଣି ତଳକୁ ଓହ୍ଲେଇବାକୁ ପଡ଼େ— ତା ପରେ ସେଇଠୁ ମାର୍କେଟ ଆରମ୍ଭ ହେବାଯାଏ। ମୁଁ ସେଇଠି ତାକୁ ଦେଖେଁ।

ସେ ସେମିତି ବସି ଥାଏ। ତାର ଦି'ଟା କଳା କଳା ଗୋଡ଼ା ବାଁ ଗୋଡ଼କୁ ସିଧା ଲମ୍ବେଇ ଦେଇ ଡାହାଣ ଗୋଡ଼କୁ ଭାଙ୍ଗି ଆଣି ପୁଣି ସେଇ ବାଁ ଗୋଡ଼ ତଳେ ଭରି ଦେଇ ଥାଏ। ଗୋଡ଼ ଦି'ଟାତ ଆଣ୍ଠୁ ଠାରୁ ଏକଦମ ସରୁ। ଆଉ ପାଦ ଦି'ଟା ? ଖୁବ୍ ତତଲା ଖରାରେ ଗଛରୁ ଖସି ପଡ଼ି ଥିବା ଶୁଖିଲା ଓସ୍ତ ପତ୍ର ଯେମିତି ମୋଡ଼ି ହୋଇ ଯାଇ ଥାଏ ଠିକ୍ ସେମିତି। ସେ ଚାଲି ପାରେନା। ଠିଆତ ହେଇ ପାରେନା— ଚାଲିବ କେମିତି ? ତେଣୁ ସେ ହାମୁଡ଼େଇ ଚାଲେ। ଆଣ୍ଠୁ ଓ ହାତରେ ଭରା ଦେଇ। ଏମିତି ଚାଲୁଥିଲା ବେଳେ ତାର ଗୋଡ଼ ଦି'ଟା ପଛରେ ଘୁସୁରୁ ଥାଏ ମାଟିରେ।

ଆଉ ତାର ଦେହଟା ବି ଅଜବ ଟାଇପର। କଳା ମୁଚ୍ମୁଚୁ ପିଚ୍ ରଙ୍ଗର। ପେଟଟା ପିଠି ଆଡ଼କୁ ପଶି ଯାଇଥାଏ। ଛାତିର ପଞ୍ଜରାଗୁଡ଼ିକ ରାତିରେ ବି ଗଣି ହେଇଯାଏ। ଯେମିତି ଏକ୍ସରେ ଫଟୋ। ଅସୁବିଧା ହୁଏନି ଗଣିବାକୁ। ତା ଉପରକୁ ବେକଟା ଗୋଟାଏ ପରିତ୍ୟକ୍ତ କଳସୀର ବେକ ପରି। ମୁଣ୍ଡଟା ସେମିତି, ଅନେକ ଦିନୁ ପଚା ଗାଡ଼ିଆରେ ପଡ଼ିଥିବା ଗୋଟାଏ ଠେକି ପରି, ସେଥିରେ କୋଉଠି ତାର ନାକ ଓ କାନ ହଠାତ୍ ଜଣା ପଡ଼େନି। ଟିକିଏ ଖୋଜିବାକୁ ପଡ଼େ।

ସେମିତି ବି ସେ ଆଖି ଯୋଡ଼ାକ। ପେଚୁଆ, ଶେତା ପଡ଼ି ଯାଇଚି। ନା ଆକର୍ଷଣ ଅଛି ନା ଆବେଗ। ଆଖିର ଶେଷ ଆଲୋକ ଟିକକ ମଧ ଯେମିତି କେବେଠୁ ଲୋପ ପାଇଚି। ନା ଆଶା ଅଛି ନା ଆଗ୍ରହ। ମୋଟ କଥାରେ କହିବାକୁ ଗଲେ ସେ ଆଖିର ପଟଳରେ ଯେମିତି ପୃଥିବୀର କୌଣସି ଛବି ପ୍ରତିବିମ୍ବିତ ହୁଏ ନାହିଁ।

କେତେ ତାର ବୟସ ହେବ ? ଏଇ ପାଞ୍ଚ ଛଅ। ସେ ସେମିତି ବସିଥାଏ। ତା ସାମନାରେ ପଡ଼ିଥାଏ ଖଣ୍ଡେ ମଇଳା କୋଟଟ ଲୁଗା, ମାର୍କେଟ ଭିତରକୁ ଗଲା ବେଳେ ଲୋକମାନେ ଯିଏ ଯାହା ପାରନ୍ତି ସେଥିରେ ପକେଇ ଦେଇ ଯାଆନ୍ତି। ପାଞ୍ଚ ପଇସା ଠାରୁ ଖୁବ୍ ବେଶିରେ ପଚିଶ ପଇସା ଯାଏ। ନା, ମୁଁ କେବେ ତା ଠାରୁ ଆଉ ବେଶି ପଡ଼ି ଥିବାର ଦେଖିଚି ବୋଲି ମନେ ପଡୁନି।

ପିଲାଟି ମଧ ବିଚିତ୍ର ପ୍ରକାରର। ସେ ଲୁଗାଟାରେ କିଏ କେତେ ପଇସା ପକଉଚି କି ମୋଟେ ନ ପକେଇ ଚାଲି ଯାଉଚି ସେ କଥା ସେ ଦେଖୁ ନ ଥାଏ।

କେତେ ପଇସା ଜମିଲାଣି– ସେତକ ତାର ରାତିର ଖାଇବା ପାଇଁ ଯଥେଷ୍ଟ କିନା ସେତକ ମଧ ଦେଖୁ ନ ଥାଏ। ସେଥିରେ ଯେମିତି ତାର ମୋଟେ ଆଗ୍ରହ ନ ଥାଏ। ସେ ମଧ କାହାକୁ କହେ ନାହିଁ ଯେ ମୋତେ ଦି' ପଇସା ଦିଅ। ସେଇଟା ଥାଏ ଗୋଟାଏ ଅଟୋମେଟିକ ପ୍ରକ୍ରିୟା। ମଣିଷମାନେ ଆସନ୍ତି, ପକେଟ ଅଣ୍ଡାଳନ୍ତି, ଯାହା ହାତରେ ପଡ଼େ ତାକୁଇ ସେ ଲୁଗା ଉପରକୁ ଫୋପାଡ଼ି ଦେଇ ନିଜର କର୍ତ୍ତବ୍ୟ ସମ୍ପାଦନ ହେଲା ମନେ କରି ସେଠୁ ମାର୍କେଟ ଭିତରକୁ ପଳାନ୍ତି।

ମୁଁ ଲକ୍ଷ୍ୟ କରିଚି, ପିଲାଟି କିନ୍ତୁ ସବୁବେଳେ ସେ ମଣିଷମାନଙ୍କୁ ଦେଖୁଥାଏ। ତାର ଦେଖିବାର ଆଗ୍ରହର ଯେମିତି ଶେଷ ନ ଥାଏ। ଏମିତି ଦେଖିବାରେ ସେ କଅଣ ଭାବୁଥାଏ ସେ କଥା ବୁଝିବା ମୁସ୍କିଲ୍ ହେଲେ ମଧ ସେ ଯେ ସମଗ୍ର ମଣିଷମାନଙ୍କ ଠାରୁ ଅଲଗା ଏଇ କଥା ଚିନ୍ତା କରୁଥିବ ବୋଧେ। ଗୋଟାଏ ସ୍ଥାନରୁ ଆଉ ଗୋଟାଏ ସ୍ଥାନକୁ ଗଲାବେଳେ ନୂଆ ନୂଆ ଜାଗାମାନ ଦେଖନ୍ତି, ନୂଆ ଜିନିଷ ବି ଦେଖନ୍ତି। ଏ ସବୁ କିନ୍ତୁ ସେ ପିଲାର ଭାଗ୍ୟରେ ନାହିଁ। ସେ କେବଳ ତା ଚାରି ପାଖରେ ଥିବା ପୃଥିବୀକୁ ଦେଖୁଚି। ସେ ପୃଥିବୀଟା କେତେ ଛୋଟ, କେତେ ସୀମିତ। ମାତ୍ର ଥରେ ଆଖି ବୁଲାଇ ଆଣିଲେ ପୃଥିବୀଟା ସରି ଯାଉଚି। ଅଥଚ ଅନ୍ୟମାନେ ? ପିଲାଟି ଏମିତି ହୁଏତ ଭାବୁଥିବ।

ମୁଁ ବେଳେବେଳେ ଦେଖିଚି ସେ ପିଲାଟି ଯେତେବେଳେ ତା'ରି ପରି ଛୋଟ ଛୋଟ ପିଲାଙ୍କୁ ଦେଖେ ତା ଆଖି ଉଜ୍ଜ୍ୱଳି ଉଠେ। ସେ ଦେଖେ, ସେ ପିଲାମାନେ ବାପ ମାଆଙ୍କ ହାତ ଧରି କେତେ ଖୁସିରେ ମାର୍କେଟ ଭିତରକୁ ଯାଉଚନ୍ତି। ସେ ପିଲାମାନେ ମାର୍କେଟ ଭିତରକୁ ଗଲାବେଳେ ଯଦି ସେ ଶିଢ଼ି ଚଢ଼ି ନ ପାରନ୍ତି ସେତେବେଳେ ସେମାନଙ୍କର ବାପା କି ମାଆ ସେମାନଙ୍କ ହାତ ଧରି ଉଠାଇ ନିଅନ୍ତି। ଶିଢ଼ି ଚଢ଼ିବାରେ କି ଟେକି ହେଇ ଯିବାରେ ଯେ ଗୋଟାଏ ଆନନ୍ଦ ଥାଏ ସେ କଥା ସେ ପିଲାଙ୍କ ମୁହଁରୁ ସେତେବେଳେ ଜଣାପଡ଼େ। ସେତେବେଳେ ମୋର ମନେ ହୁଏ ଏ ପିଲାଟି ସେଇ ସୌଭାଗ୍ୟବାନ୍ ପିଲାମାନଙ୍କୁ ଦେଖି ନିଜର ଅପାରଗତାକୁ ମନେ ନ ପକାଇ ସେମାନଙ୍କ ଆନନ୍ଦରେ ଆନନ୍ଦିତ ହେଇଯାଏ। ତା ମୁହଁରେ ମଧ ଆନନ୍ଦର କ୍ଷୀଣ ରେଖାଟିଏ ହଠାତ୍ ଆସେ ଏବଂ ପୁଣି ହଠାତ୍ ମିଳେଇ ଯାଏ। ହୁଏତ ପର ମୁହୂର୍ତ୍ତରେ ତାର ନିଜର ହତଭାଗ୍ୟ ଅବସ୍ଥା କଥା ମନେ ପଡ଼ିଯାଏ। ତା ସତ୍ତ୍ୱେ ତା'ରି ପରି ପିଲାମାନେ ଯେ ଆରାମରେ ଶିଢ଼ି ଚଢ଼ି ପାରୁଛନ୍ତି ଏ କଥା ଭାବି ସେ ହୁଏତ ଖୁସି ହେଇଯାଏ କ୍ଷଣକ ପାଇଁ।

ହଠାତ୍ ସେଦିନ ମୋର ମନେ ହେଲା ଏ ପିଲାଟି ତ ଠିକ୍ ଏଇ ଜାଗାରେ ରହୁ ନଥିବ। ତେବେ କୋଉଠୁ ଆସେ ? କେମିତି ଆସେ ? ତାକୁ କିଏ ଆଣେ ? କିଏ ପୁଣି ତାକୁ ଏଠୁ ନେଇ ଯାଏ ? ସେ କେଉଁଠି ରୁହେ ? ତାର ରହିବା ଘରଟି କେମିତି ହେଇଥିବ ? ତାର ବାପ ମାଆ ଅଛନ୍ତି କି ? ସେମାନେ ଏ ପିଲାଟିକୁ

ଏଠି ଏକୁଟିଆ ଛାଡ଼ି ଦେଇ କେମିତି ନିଶ୍ଚିନ୍ତ ହୋଇ ରହି ପାରୁଛନ୍ତି ? ସେମାନେ କେତେ ନିଷ୍ଠୁର ? ଦୀର୍ଘ ସମୟ ପିଲାଟି ଏଠି ବସି ରହିବା ବେଳେ ସେ କଅଣ ଭୋକ ଶୋଷକୁ ଏଡ଼ି ପାରୁଥିବ କି ? ଝାଡ଼ା ପରିସ୍ରା ? କଅଣ ସେ କରୁଥିବ ସେତେବେଳେ ? ତା ପାଖରେତ ଆଉ କେହି ନାହିଁ।

ବେଳେ ବେଳେ ଏମିତି କେତୋଟି କଥା ମୋ ମନକୁ ଆସୁଥିଲେ ମଧ୍ୟ ମୁଁ ସେ ସବୁକୁ ନେଇ କେବେ ମୁଣ୍ଡ ଖେଳେଇ ନାହିଁ ବା ସେ ସବୁ ବିଷୟରେ ଅଧିକ ଅନୁସନ୍ଧାନ କରିବା କଥା ଚିନ୍ତା କରିନାହିଁ। ସେମିତି ଗୋଟାଏ ଅନୁସଂଧାନର ଆବଶ୍ୟକତା ଅଛି ବୋଲି ମଧ୍ୟ ଚିନ୍ତା କରିନାହିଁ। ମୁଁ ବରାବର ମୋ କଥାହିଁ ଚିନ୍ତା କରି ଆସିଚି। ମୁଁ ଓ ମୋର ପରିବାର ଛଡ଼ା ମୁଁ ଅନ୍ୟ କାହାରି କଥା କେବେ ଚିନ୍ତା କରିନାହିଁ। ସେ ପରି ଅବସ୍ଥାରେ ମୋ ବାହାରେ ଆଉ ଏକ ପୃଥିବୀ କଥା ଚିନ୍ତା କରିବାକୁ ମୋର ବେଳ କାହିଁ ?

ବେଳେ ବେଳେ ଏମିତି ବି ହେଇଚି। ମୋ ଭିତରେ ମୁଁ ଟା ଯେତେବେଳେ ଖୁବ୍ ଶକ୍ତିଶାଳୀ ହୋଇ ଉଠିଚି—ସେ ମୋ ଭିତରେ ନିଜକୁ ଜଣେ ଦିଗ୍‌ବିଜୟୀ ସମ୍ରାଟ୍ ବୋଲି ଘୋଷଣା କରି ଦେଇଚି। ସେତେବେଳେ ସେଇ ମାର୍କେଟ ଗେଟ୍ ସାମ୍‌ନାରେ ମୁଁ ସେଇ ଅସହାୟ ପିଲାଟିକୁ ଭେଟିଥିଲେ ମଧ୍ୟ ଏବଂ ତାକୁ ଦେବା ପାଇଁ ପକେଟରେ ହାତ ପୂରେଇ ଯେତେବେଳେ ଦେଖିଚି ମୋ ପାଖରେ ଖୁଚୁରା ଓ ଛୋଟ ପଇସା ନାହିଁ କିମ୍ବା ଯେଉଁ ଦୁଇ, ଚାରିଟି ଅଛି ସେ ସବୁ ଏମିତି ଅକ୍ଲେଶରେ ମୁଣ୍ଡି ପାରୁଥିବା ପଇସା ନୁହେଁ, ସେତେବେଳେ ମୁଁ ହାତକୁ ବାହାର କରି ଆଣିଚି ଏବଂ ସାମାନ୍ୟ ମାତ୍ର ଅନୁଶୋଚନା ନ କରି ଚଞ୍ଚଳ ପଦକ୍ଷେପରେ ସେଠୁ ବାହାରି ଯାଇଚି। ଦାତାପଣଟା ଯେ କେବଳ ଛୋଟ ପଇସା ପକେଟରେ ଥିଲେ ମୋ ଭିତରେ କୁରୁକୁରୁ ହୁଏ ଏ କଥା ମୁଁ ବରାବର ଜାଣେ।

ବୋଧେ ଏଇ କାରଣରୁ ମନ୍ଦିର ସହିତ ଖୁଚୁରା ପଇସାର ଗୋଟାଏ ଘନିଷ୍ଠ ସମ୍ପର୍କ ବରାବର ରହି ଆସିଚି। ସେତେବେଳେ ମୁଁ ଆଗ ଖୁଚୁରା ପଇସା କଥା ଚିନ୍ତା କରେଁ ଏବଂ ପରେ ଦିଅଁ ଦର୍ଶନ। ବେଶ କିଛି ଦିନର ସଂଚୟ ପରେହିଁ ମୁଁ ମନ୍ଦିରକୁ ଯାଇ ଥାଏଁ।

ସେ ଦିନ କିନ୍ତୁ ଅସ୍ୱାଭାବିକ ଘଟଣାଟିଏ ଘଟିଲା ସେଇ ମାର୍କେଟ ସାମନାରେ। ଏମିତି କେବେବି ହେଇ ନ ଥିଲା। ଏମିତି ଘଟଣାଟିଏ ମୋର ଶତ୍ରୁଟିର ଭାଗ୍ୟରେ ଘଟୁ ଏପରି କଥା ମଧ୍ୟ କେହି କେବେ ଚିନ୍ତା କରିବ ନାହିଁ।

ମୁଁ ଦୁଇ ହାତରେ ଦୁଇଟା ଅପେକ୍ଷାକୃତ ବଡ଼ ବଡ଼ ପରିବା ଭର୍ତ୍ତି ବେଗ ଧରି ମାର୍କେଟ ବାହାରକୁ ଆସି ମୋର ସ୍କୁଟର ଥିବା ଜାଗାରେ ପହଞ୍ଚି ଦେଖିଲି ମୋ ପକେଟରୁ ସ୍କୁଟର ଚାବିଟା ଉଭାନ ହେଇ ଯାଇଚି। ମୋ ମୁଣ୍ଡରେ ବଜ୍ର ପଡ଼ିଲା। ମୁଁ ଏବେ କରିବି କଅଣ ? ଦୁଇ ଦୁଇଟା ଭାରି ବୋଝକୁ ହାତରେ ଧରି

ମୁଁ କେତେ କାଳ ବା ଏମିତି ଚାବି ପେଣ୍ଡାଟାକୁ ମାର୍କେଟ ଭିତରେ ଖୋଜି ପାରିବି ? ପରିବା ବେଗ ବୁଲଟାକୁ କୌଣସି ଗୋଟାଏ ଜାଗାରେ ବା କାହାରି ଦାୟିତ୍ୱରେ ଛାଡ଼ି ଦେବାକୁ ମଧ୍ୟ ମୋର ସାହସ ହେଉ ନ ଥିଲା ।

ଆଜିକାଲି ଯୁଗରେ ଦୋକାନୀମାନଙ୍କଠାରୁ କିଣିଥିବା ଜିନିଷକୁ ପୁଣି ତାଙ୍କରି ଜିମା ରଖିଦେଇ ଯିବା ଯେ କେତେ ଦୂର ବୁଦ୍ଧିମାନର କାମ ସେ କଥା ମଧ୍ୟ ଚିନ୍ତା କରୁଥିଲି । ତା'ଛଡ଼ା ଚାବି ଖୋଜିବାଟାତ କୌଣସି ପ୍ରକାରେ ଦଶ ପନ୍ଦର ମିନିଟରେ କାମ ନୁହେଁ । ଘଣ୍ଟାଏ କି ଦୁଇ ଘଣ୍ଟାରେ ମଧ୍ୟ ସରିବ କିନା ସନ୍ଦେହ ।

ମୋର ମନେ ପଡ଼ିଲା ମୋ ସ୍ତ୍ରୀ ମୋତେ ଶୀଘ୍ର ପରିବା ନେଇ ଫେରିବାକୁ କହିଥିଲେ । କାରଣ ଘରେ ପରିବା ମୋଟେ ନ ଥିଲା । ମୁଁ ମଧ୍ୟ ସେଦିନ ଶସ୍ତା ଦେଖି ପାଏ ଚିଙ୍ଗୁଡ଼ି କିଣିଥିଲି । ମାଛଟି ବରଫଠାରୁ ଅଲଗା ହେବା ପର ଠାରୁ ଶୀଘ୍ର ପଚିବାକୁ ଆରମ୍ଭ କରିଚି । ତଥାପି ଏଇ ଅବସ୍ଥାରେ ତାକୁ ତେନ୍ତୁଳି ପକେଇ ଖଟା କଲେ ଚମତ୍କାର ତରକାରୀ ହୁଏ । ଏ କାମରେ ମୋ ସ୍ତ୍ରୀଙ୍କ ଦକ୍ଷତାକୁ ଏ ଯାଏ କେହି ଚେଲେଞ୍ଜ କରି ପାରି ନାହାନ୍ତି ।

ତେଣୁ ମୋର ବ୍ୟସ୍ତତା ସହଜରେ ଅନୁମେୟ । ମୁଁ ଗୋଟାଏ ତ୍ରିଶଙ୍କୁ ଅବସ୍ଥାରେ ଥିଲି । ନା ଘରକୁ ଯାଇ ପାରୁଥିଲି ନା ଚାବିଟାକୁ ଭଲ ଭାବେ ଖୋଜି ପାରୁଥିଲି । ଦୁଇ ହାତରେ ବୁଲଟା ବେଗ ଝୁଲେଇ ମୁଁ ଅର୍ଦ୍ଧ ପାଗଳ ଅବସ୍ଥାରେ ମାର୍କେଟ ଭିତରେ ତଳକୁ ଚାହିଁ ଚାଲୁଥିଲା ବେଳେ ହଠାତ୍ ଗୋଟାଏ ନାରୀ କଣ୍ଠର ଆୱାଜ ଶୁଣି ମୁଁ ଥମକି ଠିଆ ହେଇ ଗଲି ।

"ଆରେ କଅଣ ହେଲା ମି: ମହାପାତ୍ର । କିଛି ହଜିଗଲା ନା କଅଣ ?"

ମୁଁ ବେଗ୍ ବୁଲଟାକୁ ତଳେ ଥୋଇ ଦେଇ ଠିଆ ହେଲି ଏବଂ ପକେଟରୁ ରୁମାଲ ବାହାର କରି ମୁହଁରୁ ଝାଳ ପୋଛିବାକୁ ଲାଗିଲି ।

ସୁଚିତ୍ରା ଦେବୀ ମୋ ପାଖକୁ ଲାଗି ଆସି ଠିଆ ହେଲେ ।

"ମୋ ସ୍କୁଟର ଚାବିଟା କୋଉଠି ଖସି ପଡ଼ିଲା ।"

"ଆରେ ଏଥିରେ ଏତେ ଭାବିବାର କଅଣ ଅଛି ? ଘରେ ଡୁପ୍ଲିକେଟ୍ ଚାବିଟାତ ନିଶ୍ଚୟ ଥିବ । ଚାଲନ୍ତୁ ମୁଁ ଆପଣଙ୍କୁ କାରରେ ନେଇଯିବି ।" ସେ କହିଲେ ।

କଥାଟା ହୁଏତ ଖୁବ୍ ସହଜ ହେଇ ଯାଆନ୍ତା । କିନ୍ତୁ ମୁଁ ଦେଖିଲି ତାଙ୍କ ସହିତ ତାଙ୍କ କୁନି ପୁଅ । ମାଆର ଲୁଗାକାନିକୁ ଧରି ଠିଆ ହେଇଚି । ହୁଏତ କାରରେ ତାଙ୍କର କୁକୁର ଉପରେ 'ଟାଇଗର' ଶୋଇଥିବ ଅଧଫୁଟ ଲମ୍ବର ଜିଭଟାକୁ ପକାକୁ କାଢ଼ି । ତାଙ୍କ ସ୍ୱାମୀ ଯେ କେବେ ବି ତାଙ୍କ ସହିତ ମାର୍କେଟ ଆସନ୍ତି ନାହିଁ ଏ କଥା ମୁଁ ଭଲ ଭାବରେ ଜାଣେଁ । ମୁଁ ଏକଥା ମଧ୍ୟ ଜାଣେ ସୁଚିତ୍ରା ଦେବୀ ସପ୍ତାହରେ ଦୁଇ ତିନି ଥର ତାଙ୍କ ଘର ଠାରୁ ଅନ୍ତତଃ ପକ୍ଷେ ଦଶ କିଲୋମିଟର ଦୂରରେ ଥିବା ମାର୍କେଟକୁ ଆସନ୍ତି ପରିବା କିଣିବାକୁ । ସେ କହନ୍ତି

ଏଠୁ ମାର୍କେଟରୁ ଆଦିବାସୀ ମହିଳାମାନଙ୍କ ଠାରୁ ମୂଲ ଚାଲ କରି ପରିବା ନେଇ ପାରିଲେ ବେଶ ଲାଭ ମିଳେ। ଓଜନରେ ଯେତିକି ଲାଭ, ଦରଦାମରେ ତା'ଠାରୁ ଅଧିକ ଲାଭ। ଗାଡ଼ିର ତେଲ ଖର୍ଚ୍ଚ ଉଠି ବେଳେ ବେଳେ ଆହୁରି ବଳି ପଡ଼େ।

ସୁଚିତ୍ରା ଦେବୀଙ୍କ ଠାରୁ ସେ ପ୍ରକାର କୌଣସି ଲାଭ ମୁଁ ଉଠାଇବାକୁ ଚାହୁଁ ନ ଥିଲି।

ସୁଚିତ୍ରା ଦେବୀଙ୍କ ସହିତ ମୋର ସଂପର୍କ ମାନେ ତାଙ୍କ ପରିବାର ସହିତ ମୋ ପରିବାରର ସମ୍ପର୍କ ବେଶ ପୁରାତନ। ତାଙ୍କ ସ୍ୱାମୀ ଅବିନାଶ ମୋର ଅନେକ ଦିନର ବନ୍ଧୁ। ଏକଦା ଆମେ ପଡ଼ୋଶୀ ମଧ୍ୟ ଥିଲୁଁ। କିନ୍ତୁ ତା ପରେ ଅବସ୍ଥାଚକ୍ରରେ ପଡ଼ି ଆମ ଭିତରର ସଂପର୍କଟା ଅନେକ କମି ଆସିଚି। ତାର କାରଣ ଅବିନାଶ ପ୍ରମୋଶନ ପାଇ ଅନେକ ଉପରକୁ ଉଠି ଯାଇଚନ୍ତି, ଆଉ ମୁଁ ଯେଉଁଠି ଥିଲି ସେଇଠି ରହି ଯାଇଚି। ସେ ବଡ଼ ଘର ପାଇ ସେଠାକୁ ଉଠି ଯାଇଚନ୍ତି ଆଉ ଟାଇପ ଥ୍ରୀରୁ ଫୋର୍‌ଯାଏ ଯାଇ ପାରିଚନ୍ତି।

ତେଣୁ ଆମ ଭିତରେ ସଂପର୍କଟା ସେଇ ସ୍ତରକୁ ଆସି ପାରିଚି ଯାହା ଯେତେ ଆନ୍ତରିକ ନୁହେଁ, ସେତିକି ଔପଚାରିକ ମାତ୍ର।

ମୁଁ ତାଙ୍କୁ କହିଲି "ମୁଁ ଆପଣଙ୍କୁ ଏତେ କଷ୍ଟ ଦେବାକୁ ଚାହୁଁ ନାହିଁ। ଆଉ ତା'ଛଡ଼ା ସେଥିରେ ମୋର ଚାକିରୀ ମିଳିବାର ଶେଷ ଆଶାଟିକକ ମଧ୍ୟ ମୋତେ ଛାଡ଼ିବାକୁ ପଡ଼ିବ।"

କଥାର ଗତି ବଦଳେଇବାକୁ ମୁଁ କହିଲି "ପୁଅକୁ କେତେ ବର୍ଷ ହେଲା? ହେଲେ ସେ ଦିନ ପରି ମନେ ପଡୁଚି ତାର ଏକୋଇଶିଆକୁ ଆମେ ଯାଇଥିଲେ। ହୋଟେଲ ପାମ୍‌ବିଚ୍‌ରେ ହେଇଥିଲା ନା?"

"ହଁ ମା। ହେଲେ ଦି'ବର୍ଷ ତଳର କଥା। ଏବେ ତିନି ପୂରି ହେଲା। ଏଇ ବର୍ଷ ମାନେ ଏଇ ଗତ ମାସ ଠାରୁ ସ୍କୁଲକୁ ଯାଉଚି। ଘରେ ଏତେ ଉତ୍ପାତ କଲା ନା ଆଉ କଅଣ କହିବି?"

"ଉତ୍ପାତ? ମାନେ?"

ସେ ସ୍ୱାଭାବିକ ଭାବରେ ମୋ ପାଖକୁ ଲାଗି ଆସିଲେ ଏବଂ କହିଲେ "ସବୁବେଳେ ଯାଇ ସେ ସରଭେଣ୍ଟ କ୍ୱାଟରର୍ସରେ ପହଞ୍ଚୁଥିଲା। ତାକୁ ଆଉ ଘରେ କେତେ ଜଗିବି?"

ମୁଁ ଖାଲି ନୁହେଁ, ସୁଚିତ୍ରା ଦେବୀଙ୍କୁ ସହରର ପ୍ରାୟ ସବୁ ମାନ୍ୟ ଗଣ୍ୟ ବ୍ୟକ୍ତି ଜାଣନ୍ତି। ସବୁ ଲେଡ଼ିଜ୍ କ୍ଲବ୍ କାର୍ଯ୍ୟକ୍ରମରେ ସେ ଆଗରେ ଥାଆନ୍ତି। ଅବିନାଶ ଅଫିସ୍ ଗଲା ପରେ ସୁଚିତ୍ରା ଦେବୀ ମଧ୍ୟ ବାହାରି ଯାଆନ୍ତି। ସେ ଅବସ୍ଥାରେ ପିଲାଟିଏ ସବୁବେଳେ ଥାଏ ଚାକରାଣୀ ଦାୟିତ୍ୱରେ। ସେଇଥିପାଇଁ ସରଭେଣ୍ଟ କ୍ୱାଟରର୍ସଟି ସାହେବମାନଙ୍କ ବଂଗଳାକୁ ଲାଗି ହେଇଥାଏ।

ମୁଁ କହିଲି ଏଇଟାତ ସ୍ୱାଭାବିକ କଥା। ଚାକରାଣୀ ଛଡ଼ା ଆପଣ ଯେମିତି ଚଳି ପାରିବେନି ଚାକରାଣୀ ଛଡ଼ା ସେ ପୁଅ ମଧ ଚଳି ପାରିବନି। ତା ମଝିରେ ଆପଣ ଆଉ ଲକ୍ଷ୍ମଣରେଖା ଟାଣିଲେ କେମିତି ହେବ ?

ସେ କହିଲେ ମୁଁ କଅଣ ମନା କରୁଚି କି? କିନ୍ତୁ ଅସଲ କଥାଟା କଅଣ ଜାଣନ୍ତି ? ସେ ପିଲା ସେଠି ଆଉ ସବୁ ବାଜେ ପିଲାଙ୍କ ମେଳରେ ଏମିତି ଜମେଇ ସାରିଲାଣି ଯେ ସତେ ଯେମିତି ଇଏ ସେଠି ଗୋଟାଏ ହୀରୋ। ଆଉ ଆପଣତ ସେଠିକା କଥା ଜାଣନ୍ତି। ସବୁଯାକ ରିକ୍ସାବାଲା, ନଚେତ୍ ମ୍ୟୁନିସିପାଲଟି ମେହେନ୍ତରଙ୍କ ପିଲା। ମୋ କାନ ପାଖକୁ ମୁହଁ ଆଣି ସେ କହିଲେ ମୁଁ ତ ସେମାନଙ୍କୁ ଘରେ ପୂରେଇ ଦିଏନି। କିନ୍ତୁ କଅଣ କରିବି କହିଲେ। ମୁଁ ନ ଥିଲା ବେଳେ ଚାକରାଣୀ ତାକୁ ନେଇ ସେଠି ଛାଡ଼ି ଦେଉଚି।

ସୁଚିତ୍ରା ଦେବୀଙ୍କ ମାନସିକତା ମୁଁ ବୁଝି ପାରୁଥିଲି। ଦୁଇଟି ଭିନ୍ନ ଇଲାକାର ସମ୍ପର୍କ ଅନେକ ଅନିବାର୍ଯ୍ୟ କାରଣରୁ ଗୋଟିଏ କେନ୍ଦ୍ର ବିନ୍ଦୁରେ କେନ୍ଦ୍ରୀଭୂତ ହେଉଥିଲା ବେଳେ ତାକୁ କିଏ ଓ କେମିତି ଅଲଗା କରିବ ସେ କଥା ମୁଁ ବୁଝି ପାରୁ ନ ଥିଲି। ସୁଚିତ୍ରା ଦେବୀ ନିଜେ ତାକୁ ଟାଣି ଓଟାରି ଅଲଗା କରି ଦେବାକୁ ଚାହିଁଥିଲେ ମଧ, ଏବଂ ଦୁଇ ଫାଳର ପୃଥିବୀ ଅଲଗା ଭାବରେ ଦୁଇଟା ହେଲେ ମଧ ତାହା ବସ୍ତୁତଃ ଗୋଟିଏ ଏବଂ ସେ ଦୁଇଟି ଏକାଠି ହେଲେ ଯାଇ ତାକୁ ଆଉ ଗୋଟାଏ ପୃଥିବୀ ବୋଲି କହି ହେବ। ଅନ୍ୟଥା ନୁହେଁ।

ଏ ଚରମ ସତ୍ୟଟାକୁ ମୁଁ କିନ୍ତୁ ସୁଚିତ୍ରା ଦେବୀଙ୍କୁ କହି ପାରିଲିନି। କହିବାର ଆବଶ୍ୟକତା ମଧ ନ ଥିଲା। କାରଣ ସେ ଯେଉଁ ଆବହାଓ୍ୱା ଭିତରେ ବଢ଼ି ଆସିଚନ୍ତି ତା ଭିତରେ ପୃଥିବୀ ଯେ ଗୋଟିଏ ଏ କଥା ମୋଟେ ସ୍ୱୀକାର କରନ୍ତି ନାହିଁ।

ଆରେ ପୁଅ କୁଆଡ଼େ ଗଲା ? ସୁଚିତ୍ରା ଦେବୀ ଚମକି ଉଠିଲେ। ତାଙ୍କ ସହିତ ମୁଁ ବି। ଆମେ ଦି'ଜଣ କଥାରେ ଏମିତି ମାତି ଯାଇଥିଲୁଁ ଯେ ପୁଅର ଉପସ୍ଥିତି କଥା ପ୍ରାୟ ଭୁଲି ଯାଇଥିଲୁଁ।

ଆମେ ଦୁହେଁ ଆଖି ପାଇବା ଯାଏ ଚାରି ଆଡ଼କୁ ଅନେଇଲୁଁ। କିନ୍ତୁ କୋଉଠି ତାକୁ ଦେଖିଲୁନି। ଯା ଭିତରେ ଏତେ ଦୂର ସେ କେମିତି ପଳେଇଲା ? ସେତ ପାଗଳ ପ୍ରାୟ ହେଇଗଲେ। ମୋ ମନକୁ ଅନେକ ପାପ ଛୁଇଁଲା। କେହି ଆଉ ହରଣଚାଳ କରି ନେଇ ନାହିଁ ତ ? ଆଜିକାଲି ଏସବୁ କଥା ଅସମ୍ଭବ ନୁହେଁ। ମୁଁ ନିଜକୁ ଦୋଷୀ ମନେ କରୁଥିଲି। ମୁଁ ତାଙ୍କ ସହିତ ଗପ ଜମେଇ ନ ଥିଲେ ହୁଏତ ଏତେ କଥା ହେଇ ନ ଥାଆନ୍ତା। ଆମେ ଦୁହେଁ ସମସ୍ତଙ୍କୁ ପଚାରିବାକୁ ଆରମ୍ଭ କରି ଦେଲୁଁ। କିନ୍ତୁ କି ଆଶ୍ଚର୍ଯ୍ୟ, କେହି ଜଣେ ମଧ ସେପରି ପିଲାଟିର ସଂଧାନ ଦେଇ ପାରିଲେନି।

ମାର୍କେଟ୍ ଜାଗାଟା ସେତେବେଳକୁ ମହଳଣ ପଡ଼ି ଆସିଲାଣି। ସମସ୍ତେ ପ୍ରାୟ ହାଟ ବାହୁଡ଼ା। ଗାଡ଼ି ଘୋଡ଼ା ବି କମି ଆସିଲାଣି। ଗୋଟାଏ ପୁଲିସକୁ ଦେଖି

ତାକୁ କହିଲୁଁ। ସେ କହିଲା ଏମିତି କେତେ ପିଲା ମାର୍କେଟରେ ଭୁଲୁଚନ୍ତି। ଆଜିକାଲି ପିଲାଙ୍କ କଥା କାହିଁକି କହୁଚନ୍ତି ? ମହା ବାହୁଙ୍ଗା। ଆମକୁ ସାନ୍ତ୍ୱନା ଦେବାକୁ ଯାଇ ସେ କହିଲା ତେବେ ମୁଁ ଏଇଠି ଅଛି। ଯଦି ନ ପାଇବେ, ଫେରି ଆସି ମୋତେ କହିଲେ ମୁଁ ଥାନାକୁ ଖବର ଦେବି। ଆପଣ ବ୍ୟସ୍ତ ହୁଅନ୍ତୁନି। ଦେଖନ୍ତୁ। ମିଳି ଯାଇପାରେ।

ସେ ଆମକୁ ଉତ୍ସାହିତ କଲା କି ନିରୁତ୍ସାହିତ କଲା ମୁଁ ବୁଝି ପାରିଲିନି। ଆମେ ତାର ଶେଷ କଥା ପଦକ ଶୁଣିବା ପୂର୍ବରୁ ଆଗେଇ ଯାଇଥିଲୁଁ।

ସୁଚିତ୍ରା ଦେବୀଙ୍କ କାନ୍ଦ କାନ୍ଦ ଅବସ୍ଥା ଦେଖି ମୁଁ ମଧ ବ୍ୟସ୍ତ ହେଇ ଯାଉଥିଲି। ଆମର ସାମାନ୍ୟ ମାତ୍ର ଅନ୍ୟମନସ୍କତା ଭିତରେ ଏମିତି ଗୋଟାଏ ଅଘଟଣ ଘଟିଯିବ ବୋଲି ମୁଁ ମୋଟେ ଧାରଣା କରି ପାରି ନ ଥିଲି। ସେଥିପାଇଁ ମୁଁ ନିଜକୁ ହିଁ ଦାୟୀ କରୁଥିଲି।

ଆମେ ଦୁହେଁ ମାର୍କେଟ ବାହାରକୁ ଆସିଲୁଁ। ସେଠୁ ତିନି ଆଡ଼କୁ ରାସ୍ତା ଯାଇଚି। ଆମେ କୁଆଡ଼କୁ ଯିବା ? ମୋ ଭିତରେ ଗୋଟେ ହତାଶିଆ ଭାବ ମୋତେ ଆବୋରି ପକେଇଲା। ମୋର ହଜିଥିବା ଚାବିର ଦୁଃଖ ସହିତ ଭାରୀ ପରିବା ବେଗର ବୋଝ କଥା ଆଉ ମୁଁ ମୋଟେ ଚିନ୍ତା କରୁ ନ ଥିଲି। ଯଦିଓ ସବୁ ଯାକ ଯନ୍ତ୍ରଣା ମୋ ଭିତରେ ଗୋଟାଏ ହାହାକାର ଅବସ୍ଥା ସୃଷ୍ଟି କରୁଥିଲା।

ମୁଁ ଦେଖିଲି ସୁଚିତ୍ରା ଦେବୀ ପୂରାପୂରି ଭାଙ୍ଗି ପଡ଼ିବା ଅବସ୍ଥାକୁ ଆସିଲେଣି। ସେ କାନ୍ଦ କାନ୍ଦ ହେଇ ଗଲେଣି।

ସେ ଗୋଟାଏ ହତାଶିଆ ଭାବ ନେଇ କହିଲେ କଅଣ କରିବା ମହାପାତ୍ର ବାବୁ ?

ହଠାତ୍ ମୋ ଆଖିରେ ପଡ଼ିଲା। କହିଲି, ହେଇ ଦେଖନ୍ତୁ। ଆ ସେଠି। ସେ ପିଲା ପାଖରେ।

ଆମେ ଏକ ପ୍ରକାର ଦୌଡ଼ିଲୁଁ। ସୁଚିତ୍ରା ଦେବୀ ଆଗରେ। ଏବଂ ମୁଁ ତାଙ୍କ ପଛରେ।

ଆମେ ଦେଖିଲୁଁ ସେଇ ପାହାଚ ପାଖରେ ବସି ଭିକ ମାଗୁଥିବା ପିଲା ପାଖରେ ପୁଅ ବସିଚି। ଦୁହେଁ ଦୁହିଁଙ୍କୁ ଦେଖୁଚନ୍ତି। ନା ଇଏ ତା ମାଆ କଥା ଭାବୁଚି ନା ସିଏ ତାର ଶାରୀରିକ ଅକ୍ଷମତା କଥା, ତାର ଦାରିଦ୍ର୍ୟ କଥା ଚିନ୍ତା କରୁଚି। ଦୁହିଁଙ୍କ ମୁହଁରେ ଅନାବିଳ ହସ ଲାଗି ରହିଚି। ଦୁଇ ଫାଳର ପୃଥିବୀ ମିଶି ଯାଇଚି ଯେମିତି। ସେ ବିଷୟରେ ତାହାହିଁ ହୁଏ।

ଆମେ ଆହୁରି ମଧ ଦେଖିଲୁଁ ପୁଅ ସେ ପିଲାର ବଂକା ବଂକା ଗୋଡ଼ରେ ହାତ ମାରୁଚି ଏବଂ ତା ମୁହଁକୁ ଅନାଉଚି। ସତେ ଯେମିତି ତାକୁ ପଚାରୁଚି ତୋତେ କଷ୍ଟ ହେଉଚି ନିଶ୍ଚେ ? ତୋର ଏ ଗୋଡ଼ ଏମିତି କେମିତି ହେଲାରେ ?

ସୁଚିତ୍ରା ଦେବୀ ପାଖରେ ପହଞ୍ଚି ଗଲେ ଏବଂ ପୁଅକୁ ଉଠେଇ ନେଇ ଛାତିରେ ଜାକି ଧରିଲେ। ତାଙ୍କର ଦୁଇ ଆଖିରୁ ଲୁହ ଧାର ବହି ଯାଉଥାଏ ଅବାରିତ ଭାବରେ।



# ଜାତୀୟ ରାଜପଥ —୨

ସାରା ସହରର ଲୋକମାନେ ସେ ଦିନ ଏକାଠି ହେଇ ଗଲେ। ହଜାର ହଜାର ଲୋକ ହଠାତ୍ ଏକାଠି ହେବା, ପୁଣି ଗୋଟାଏ ଜାଗାରେ, କମ୍ କଥା ନୁହେଁ। ଏତେ ଲୋକ ଏକାଠି ହେବା, ସେମାନଙ୍କର ସବୁ କାମ ଛାଡ଼ି ଏମିତି କେବେବି ସେ ସହର ଜୀବନରେ ହେଇ ନ ଥିଲା।

ସହରଟା ନିହାତି ଛୋଟ। ଏଇ ମାତ୍ର ଦଶ କି କୋଡ଼ିଏ ହଜାର ଲୋକ ସଂଖ୍ୟା ହେବ। ଗୋଟାଏ ସବ-ଡିଭିଜନର ସହର ସହିତ ବି ସମାନ ନୁହେଁ। କିନ୍ତୁ ତାର ଗୋଟାଏ ଇତିହାସ ଅଛି। ସେଇ ଇତିହାସହିଁ ତାକୁ ବଡ଼ କରିଚି। ସେଇ ଇତିହାସ ପାଇଁ ସେ କାହାରେ ପରିଚିତ। ଲୋକେ କହନ୍ତି ଚଇତନ ମହାପ୍ରଭୁ ଯେତେବେଳେ ଏଇ ବାଟ ଦେଇ ପୁରୀ ଯାଇଥିଲେ ଏବଂ ତାଙ୍କ ସହିତ ପ୍ରାୟ ଶହେ ଭକ୍ତ ଥିଲେ, ସେତେବେଳେ ସେ କୁଆଡ଼େ ଏଇଠି ଦୁଇ ଚାରିଦିନ ବସତି ସ୍ଥାପନ କରିଥିଲେ। ସେତେବେଳେ ସେଠି ଗାଁଟାଏବି ନଥିଲା। ନଈକୂଳ, ତିନିଟି ପାହାଡ଼ର କେନ୍ଦ୍ର ସ୍ଥଳ, ଠିକ୍ ସେଇଠୁ ନଈଟା କଥା ମାନିଲା ପରି ବଂକେଇ ହେଇ ଚଳକୁ ଚାଲି ଯାଇଚି ଏବଂ ସେଇ ନିଛାଟିଆ ନଈ କୂଳରେ ଗଢ଼ି ଉଠିଚି ଅନେକ ଅଯତ୍ନ ବର୍ଦ୍ଧିତ ବର ଓ ଓସ୍ତ ଗଛ। ଯିଏ ଦେଖିଚି, କହିଚି ସ୍ୱର୍ଗରୁ କେହି ଓହ୍ଲେଇ ଆସି ସେ ସ୍ଥାନଟା ତିଆରି କରି ଦେଲାକି ଚଇତନ ମହାପ୍ରଭୁଙ୍କ ପାଇଁ ? ସ୍ୱର୍ଗବାସୀମାନେ ହୁଏତ ଚୈତନ୍ୟଙ୍କ ଆସିବା କଥା ଆଗରୁ ଜାଣିଥିଲେ।

ତିନି ଦିନ କାଳ ସେ ସ୍ଥାନଟା ଖାଲି ଉଠିଲା ଓ ପଡ଼ିଲା। ହଜାର ହଜାର ଲୋକ। ଦିନ ରାତି ଖୋଳ କରତାଳ ଓ ଝାଂଜ ବଜାରେ ନଦୀ ଓ ପର୍ବତ କନ୍ଦର କମ୍ପି ଉଠିଲା। ତିନି ଦିନ ତିନି ରାତି କାଳ ମହାପ୍ରଭୁ ଯେଉଁ ଛାଉଁଣୀରେ ବିତେଇ ଥିଲେ ତାହା କୁଆଡ଼େ ଏବେ ମଧ୍ୟ ସେମିତି ଅଛି। କିଛି ମାଙ୍କଡ଼ା ପଥରର ଚଟାଣ ଏବେ ବି ସେଠି ଦୃଶ୍ୟମାନ। ତାହାରି ଉପରେ ତିଆରି ହେଇଚି ମନ୍ଦିରଟିଏ, ଅବଶ୍ୟ ସେ ସବୁ ଏବର କଥା। କିନ୍ତୁ ଲୋକେ କହନ୍ତି ମହାପ୍ରଭୁଙ୍କ ସ୍ୱପ୍ନକୁ ସାକାର କରିବାକୁ ଏବର ଭକ୍ତମାନେ ସେଠି ମନ୍ଦିରଟିଏ ଏବଂ ତା' ସାଙ୍ଗକୁ ଅତିଥିଶାଳାଟିଏ ତିଆରି କରି ଦେଇଚନ୍ତି। ସବୁବେଳେ ସେଠି ଲୋକ ଭର୍ତ୍ତି।

ଚୈତନ୍ୟଙ୍କ ସମୟରେ ଯେଉଁଠି ଗାଁଟିଏ ତିଆରି ହେଇଗଲା ମନକୁ ମନ, ମାନେ କେଉଁ ଅଜଣା ଶକ୍ତି ବଳରେ ସେ ଗାଁଟି ତା'ପରେ ପରେ ଏକ ବଜାରରେ

ପରିଣତ ହେଇଗଲା। ସବୁ ଜନ ବସତିର ଉତ୍ଥାନ ଏମିତି ହୁଏ। ଗାଁରୁ ବଜାର, ବଜାରରୁ ସହର ଓ ସହରରୁ ନଗରରେ ପରିଣତ ହୁଏ। ଏହାହିଁ ତ ମଣିଷ ସଭ୍ୟତାର ଇତିହାସ। ତାକୁ ଗୋଟାଏ ରାତିରେ କେହି କେବେ ତିଆରି କରି ନାହିଁ। ସମୟ କ୍ରମେ ତାହା ଗଢ଼ି ଆସିଚି।

ଏବେ ସେ ରାସ୍ତାଟି କଥା କହୁଚି। ଚୈତନ୍ୟ ମହାପ୍ରଭୁ ଯେଉଁ ରାସ୍ତାରେ (ସେଇ ବସତିକୁ ଲାଗି) ତାଙ୍କ ଭକ୍ତମାନଙ୍କୁ ସାଥିରେ ଧରି ଏବଂ ଅଖଣ୍ଡ କୀର୍ତ୍ତନ ଗାଇ ଗାଇ ପୁରୀ ଯାଇଥିଲେ, କାଳକ୍ରମେ ସେ ରାସ୍ତାଟି ମଧ୍ୟ ଏକ ପବିତ୍ର ରାସ୍ତାରେ ପରିଣତ ହେଇଗଲା। ସବୁ ରାସ୍ତାତ ଏମିତି। ଯେଉଁ ରାସ୍ତାରେ ମହାତ୍ମାମାନେ ଯାଇ ଥାଆନ୍ତି ବା ଅନ୍ୟ ଭାଷାରେ ଯେଉଁ ରାସ୍ତାରେ ମହାତ୍ମାମାନଙ୍କର ପଦଧୂଳି ପଡ଼ିଥାଏ, ତାହା କାଳକ୍ରମେ ଆଉ ଏକ ପବିତ୍ର ସ୍ଥାନରେ ପରିଣତ ହେଇଯାଏ। ଲୋକେ ଏବେ ମଧ ବିଶ୍ୱାସ କରନ୍ତି ଯେ ଯେଉଁ ରାସ୍ତାରେ ମହାପ୍ରଭୁ ଯାଇ ଥିଲେ ତାହା ଏବେ ମଧ୍ୟ ତା'ର ପବିତ୍ରତା ହରାଇ ନାହିଁ। ତେଣୁ ଏବେ ମଧ୍ୟ କେହି କେହି ଶକ୍ତ ବେମାର ପଡ଼ିଲେ ସେ ରାସ୍ତାରୁ ଧୂଳି ନେଇ ନିଜ ଦେହରେ ବୋଳି ହୁଅନ୍ତି କିମ୍ବା ମନ୍ଦିରରେ ଯାଇ ଅଧିଆ ପଡ଼ନ୍ତି।

ସେଇ ଦିନଠୁ କୁଆଡ଼େ ସେ ସହରର ନାଁ 'ଚଇତନପୁର' ଏବଂ ସେ ରାସ୍ତାର ନାଁ ଥିଲା ଚୈତନ୍ୟ ପଥ ବା "ଚେତନା ପଥ"।

ଏ ସବୁ ଦେଶ ସ୍ୱାଧୀନ ହେବାର ଅନେକ ଆଗର କଥା। ଏବେ ହୁଏତ କେତେକାଂଶରେ ଲୋକେ ସେ ଇତିହାସ ଭୁଲି ଗଲେଣି କିମ୍ବା ତାର କିଛି ଅଂଶ ଗୋଳେଇ ମିଶି ଗଲାଣି। ଫଳରେ ସହରର ନାଁ'ଟା ଯଦିଓ ବଦଳିଲା ନାହିଁ କିନ୍ତୁ ସେ ରାସ୍ତାର ନାଁଟା ବଦଳି ଗଲା। ବୋଧେ ଏଇଥି ପାଇଁ ଯେ ସ୍ୱାଧୀନତା ପରେ କିଛି ଲୋକ ଏଇ 'ଜାତୀୟ' ଶବ୍ଦଟା ଉପରେ ବେଶୀ ଜୋର ଦେଲେ। ସେମାନେ ସବୁ କଥାରେ ଜାତୀୟ ଶବ୍ଦଟାକୁ ଲଗେଇ ବାକ୍ୟ ଗଠନ କରିବାକୁ ଗୋଟାଏ ଆଧୁନିକତା ହିସାବରେ ଧରି ନେଲେ। ଫଳରେ ସେ ରାସ୍ତାର ନାଁ ଜାତୀୟ ରାଜପଥ ହେଇଗଲା।

ସହରଟା କିନ୍ତୁ ଥିଲା ଅନେକ ବଡ଼ ବଡ଼ ସହରଠାରୁ ଭିନ୍ନ। ତାର ଲୋକମାନେ ଥିଲେ ଅତ୍ୟନ୍ତ ଶାନ୍ତ ଓ ସରଳ। ସେମାନେ ମାଛିକୁ ମ ବୋଲି କହୁ ନ ଥିଲେ। ଅତ୍ୟନ୍ତ ଉଦାର ମଧ୍ୟ କହିହେବ। କୌଣସି କଥାକୁ ସିରିଏସ୍‌ଲି ସେମାନେ ମୋଟେ ଗ୍ରହଣ କରନ୍ତି ନାହିଁ। ହେଲେ ହେଲା ନ ହେଲେ ନାହିଁ। ଯେମିତି ସବୁ ପାଇଥିବାର ଭାବ। ଆଉ କିଛି ବାକି ନାହିଁ। ଆପତ୍ତି ନାହିଁ କି ଅଭିଯୋଗ ନାହିଁ। କିଛି ନ ଥିଲେ ଯେମିତି ଚିନ୍ତା ନାହିଁ, ହଜିଲେ ବି ଭାବିବାର ନାହିଁ। ଅନନ୍ୟ ନିର୍ଲିପ୍ତତା। ସମର୍ପଣ ଭାବ ମଧ୍ୟ। ସମସ୍ତେ ଯେମିତି ଜଣେ ଜଣେ ଚୈତନ୍ୟଙ୍କ ଅବତାର।

ପୃଥିବୀ କଅଣ ? ମନୁଷ୍ୟ କଅଣ ? ବିଷୟ ଓ ଆସକ୍ତି କଅଣ ? ଏ ସବୁକୁ ସେମାନେ କେବେ ବି ମନରେ ସ୍ଥାନ ଦିଅନ୍ତି ନାହିଁ। ଏସବୁ ଭାବିବାର ଯେ ଗୋଟାଏ ସାମାଜିକ ଆବଶ୍ୟକତା ଅଛି ସେ କଥା ସେମାନେ ମନରେ ଘେନା କରନ୍ତି ନାହିଁ।

ସେ ଲୋକମାନଙ୍କର ଚରିତ୍ର ଭିନ୍ନ ଯେଉଁ ସ୍ଥାନର ବୁନିଆଦି ଏକ ଭିନ୍ନ ଉପାଦାନରେ ଗଢା, ଯାହାର ମୌଳିକ ଢାଞ୍ଚା ଭିନ୍ନ, ସେଠି ଲୋକ ଚରିତ୍ର ମଧ୍ୟ ଭିନ୍ନ ହେଇଯାଏ। ସେମିତି ବି ହେଇଯାଏ ସେଠିକା ପାଣି, ପବନ ଓ ମାଟି। ଲୋକେ କହନ୍ତି ତାହା ମଧ୍ୟ ଥିଲା ଚୈତନ୍ୟଙ୍କ ପ୍ରଭାବ।

ଉର୍ଦ୍ଦୁ କାହାଣୀଟିଏ ଏଇ ପ୍ରସଙ୍ଗରେ ମନେ ପଡୁଚି। ଦିନେ ସକାଳେ ହଠାତ୍ ଦେଖାଗଲା ଯେ ଗୋଟାଏ ଲୋକର ହାତଟିଏ ନାହିଁ। ଆରେ କୁଆଡ଼େ ଗଲା ହାତଟା ? ରାତିରେ ଶୋଇବା ପୂର୍ବରୁ ଥିଲା। ସମସ୍ତେ ଦେଖିଛନ୍ତି। ପରେ ପୁଣି ଲୋକଟି ଭାବିଲା। ହଉ ଗଲାତ ଗଲା। ଆଉ ଗୋଟାଏତ ଅଛି। ସେ ଅନ୍ୟ କାମରେ ମନ ଦେଲା। କିଛି ଦିନ ପରେ ଦେଖାଗଲା ତାର ଆଉ ଗୋଟାଏ ହାତ ନାହିଁ, ଆରେ ଇଏ କଅଣ ? ଆଉ ଗୋଟାଏ ହାତ ମଧ୍ୟ ସେମିତି ହଠାତ୍ ଉଭାନ ହେଇଗଲା ? କାହାକୁ କହିବ ? କିଏ ବା ତା'କଥା ଶୁଣିବ ? ଲାଜର କଥା ମଧ୍ୟ। ତାର ହାତଟା ଚୋରି ହେଇ ଯାଉଚି ଅଥଚ ସେ ଜାଣି ପାରୁନି କି ତାର ପ୍ରତିକାର ମଧ୍ୟ କିଛି କରି ପାରୁନି। ତା ପରେ ଗପଟା ଏମିତି ଲମ୍ବିଚି।

ଲେଖକ କ୍ରିଶନ ଚନ୍ଦର ଏଇ ଚଇତନପୁର ଲୋକମାନଙ୍କୁ ଆଖି ଆଗରେ ରଖି ଏ କାହାଣୀଟି ଲେଖି ନାହାନ୍ତି ତ ? ନଚେତ ଏମିତି କଣ ଲୋକ ଏ ଦୁନିଆରେ ଥାହାନ୍ତି ?

ଚୈତନ୍ୟପୁର ଲୋକମାନେ ସତରେ ସେମିତି। ସେମାନଙ୍କ ହାତ ଗୋଡ଼ କେହି କାଟି ନେଇଗଲେ ମଧ୍ୟ ସେମାନେ କେବେ ପ୍ରତିବାଦ କରନ୍ତି ନି। ପ୍ରତିବାଦ ଶବ୍ଦ ସେମାନେ କେବେ ଶୁଣିଥିବେ କି ନା ସନ୍ଦେହ। କୌଣସି କଥାରେ ପ୍ରତିବାଦ କରିବାତ ଦୂରର କଥା କୌଣସି ହାରି ଗୁହାରି ନେଇ ସେମାନେ କେବେ ରାଜା ଜମିଦାର କି ହାକିମ ହୁକୁମା ଠାରେ ଠିଆ ହେଇ ନାହାନ୍ତି।

ଗୋଟାଏ ଅଟଳ ବିଶ୍ୱାସ ଈଶ୍ୱରଙ୍କ ଉପରେ। ସେ ଯାହା କରିବେ। ସେ ଉପରେ ଅଛନ୍ତି। ସବୁ ଦେଖୁଛନ୍ତି। ସବୁ ଜାଣୁଚନ୍ତି। ସେ ଯେତେବେଳେ ଜନ୍ମ ଦେଇଚନ୍ତି। ମଣିଷର ଆଉ ଯାହା ଯାହା ଦରକାର ସେ ସବୁ ମଧ୍ୟ ଠିକଣା ସମୟରେ ଦେବେ, ଆମ ଭାଗ୍ୟରେ ଥିଲେ ସେ ସବୁ ଅବଶ୍ୟ ମିଳିବ। ନଥିଲେ କେମିତି ମିଳିବ ?

ତେଣୁ କେହି କେହି ସେମାନଙ୍କୁ କୌଣସି ବିଷୟରେ ଆପତ୍ତି ଅଭିଯୋଗ କରିବାକୁ କହିଲେ ମଧ୍ୟ ସେମାନେ ଆଡ଼େଇ ହେଇ ଯାଆନ୍ତି। ଚୁପ ରହନ୍ତି। କଥାଟାକୁ ଏ କାନରେ ଶୁଣି ସେ କାନରେ ବାହାର କରି ଦିଅନ୍ତି।

କହିବା ବାହୁଲ୍ୟ ଯେ ରାଜନେତାମାନେ ମଧ୍ୟ ସେ ଗାଁରୁ ହତାଶ ହେଇ ଫେରନ୍ତି। ଆଶ୍ଚର୍ଯ୍ୟ, ସେଠାର ଲୋକମାନଙ୍କର ଟିକିଏ ବୋଲି ରାଜନୈତିକ ସଚେତନତା ମଧ୍ୟ ନାହିଁ। ଭୋଟ କଥାଟାକୁ ସେମାନେ ଭିନ୍ନ ଆଖିରେ ଦେଖନ୍ତି। ମନ ହେଲେ ସେମାନେ ସମସ୍ତେ ଭୋଟ ଦେବାକୁ ଯାଆନ୍ତି, ନଚେତ କେହି ଯାଆନ୍ତିନି। ଗଲେବି କିଏ କେଉଁଠି ଭୋଟ ଦିଏ ତାର ଠିକ ଠିକଣା ନଥାଏ। ଯିଏ ଯୋଉଠି ପାଇଲା ସେଇଠି ମୋହର ମାରି ଦେଇ ଆସେ।

ଥରେତ ଏମିତି ହେଇଥିଲା। ଭୋଟ ଗଣତି ବେଳେ ଦେଖାଗଲା ଯେ ସମଗ୍ର ସହରଟାର ପନ୍ଦର ହଜାର ଭୋଟ ନାକଚ ହେଇଗଲା। ଗୋଟିଏ ବୋଲି ଭୋଟ ଠିକ୍ ଭାବରେ ପଡ଼ି ନ ଥିଲା। ବୁଝୁ ବୁଝୁ କଥା କଅଣ କି, ଭୋଟ ପୂର୍ବରୁ ସେମାନଙ୍କୁ ଦୁଇଜଣ ପ୍ରାର୍ଥୀ ଭୋଟ ପାଇଁ ଅନୁରୋଧ କରି ଥିଲେ। ତେଣୁ ଲୋକମାନେ ଜଣଙ୍କୁ କେମିତି ଦିଅନ୍ତେ? ଜଣକୁ କେମିତି ନିରାଶ କରନ୍ତେ? 'ଛେଳି' ଓ 'ମେଣ୍ଢା' ଦୁଇଟି ଚିହ୍ନରେ ବାଡ଼େଇ ଦେଇଗଲେ।

ମଜାର କଥାଟା ଘଟିଲା ତା ପରଦିନ। ଶହ ଶହ ସାମ୍ବଦିକ ଅନୁସଂଧାନକାରୀ ଜାତୀୟ ତଥା ଆନ୍ତର୍ଜାତୀୟ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନେ ଆସି ଯେତେବେଳେ ପଚାରିଲେ, ସେମାନେ କହିଲେ ଦୁହେଁ ଆମ ନିଜର ଲୋକ। ଆମେ ଜଣଙ୍କ ପାଖରେ ଅସତ୍ ହେବୁଁ କାହିଁକି?

ଏସବୁ ମଧ୍ୟ ଚୈତନ୍ୟ ମହାପ୍ରଭୁଙ୍କ ପ୍ରଭାବ ବୋଲି ସେମାନେ କହନ୍ତି। କାହାରି ମନରେ ଦୁଃଖ ଦେବାକୁ ସେମାନେ ପାପ ବୋଲି ମନେ କରନ୍ତି।

କିନ୍ତୁ ସେଇ ଚଇତନପୁରରେ ସେଦିନ ଅହେତୁକ ଅବସ୍ଥା। ସୁପ୍ତ ଆଗ୍ନେୟଗିରି ଯେମିତି ହଠାତ୍ ଉଦ୍‌ଗୀରଣ ଆରମ୍ଭ କରିଚି। ରାସ୍ତା ଘାଟ ସବୁ ବନ୍ଦ। ଜାତୀୟ ରାଜପଥକୁ ସେମାନେ ଅବରୋଧ କରି ଦେଇଚନ୍ତି। ହଜାର ହଜାର ଗାଡ଼ି ଦୁଇପଟେ ଅଟକି ରହିଚି। ଅବରୋଧକାରୀମାନେ ମଝିରେ ବସିଚନ୍ତି। ସେମାନଙ୍କର ଏକମାତ୍ର ଦାବୀ, ଏ ରାଜପଥକୁ ତୁରନ୍ତ ମରାମତି କର। ତା ନହେଲେ ବାଟ ଛାଡ଼ି ଦିଆଯିବ ନାହିଁ।

ସେମାନେ କହିଲେ ଏ ରାସ୍ତା ସ୍ୱାଧୀନତା ଠାରୁ ଏ ଯାଏ ମୋଟେ ମରାମତି ହେଇନି। ଝୁଡ଼ିଏ ମାଟି ମଧ୍ୟ ପଡ଼ି ନାହିଁ। ଅଥଚ ସବୁବେଳେ ପ୍ରତିଶ୍ରୁତି ଦିଆ ଯାଇଚି। କିନ୍ତୁ କେବେବି କାମ ହେଇନି। ପ୍ରତିଶ୍ରୁତି ଦେବା ପରେ ଆଉ କାହାରି ଦେଖା ନାହିଁ। ଭୋଟ ବେଳେ ଥରେ ଅଧେ କୁଆଡ଼େ ସେଠି ଟ୍ରକ୍‌ରେ ମୋରମ ଆଣି ଢଳା ଯାଇଥିଲା। କିନ୍ତୁ ତାହା ବିଛା ହୋଇ ନାହିଁ। ସେମିତି ପଡ଼ି ପଡ଼ି ମାଟିରେ ମିଶି ଯାଇଚି। ତାକୁ ଆଉ କେହି ଦେଖି ନାହାନ୍ତି।

ତେଣୁ ସେ ଦିନ ରାତି ପାହାନ୍ତାରୁ ସେମାନେ ରାସ୍ତା ଅବରୋଧ କଲେ। ପିଲାଛୁଆ, ସ୍ତ୍ରୀ ଏବଂ ଏପରିକି ବୁଢ଼ାମାନେ ମଧ୍ୟ ଆସି ରାସ୍ତା ଉପରେ ବସିଗଲେ। କହିଲେ ହେ ସରକାର! ଆଜି ତୁମର ଦିନେ କି ଆମର ଦିନେ। ଆମେ ତୁମକୁ ଛାଡ଼ିବୁ ନାହିଁ। ଅନେକ ଆମେ ସହିଛୁଁ। ଆଉ ସହିବାର ନୁହେଁ। ହେଇ ଦେଖ। ଆଜି ଆଉ ବସିବା ଠାରୁ ଉଠିବୁଁ ନାହିଁ।

କଥାଟା ହେଲା, ତା ଆଗଦିନ ରାତିରେ ଗୋଟାଏ ଯାତ୍ରୀବାହୀ ବସ ସେ ରାସ୍ତାରେ ଓଲଟି ପଡ଼ିବା ଫଳରେ ଲୋକମାନେ ଅତି କଲବଲ ହେଇ ସେମାନଙ୍କ ସାମନାରେ ମରିଗଲେ। ଆଗରୁ ଯେ କେତେଥର ସେ ରାସ୍ତାରେ ଦୁର୍ଘଟଣା ଘଟି ନାହିଁ ସେ କଥା ନୁହେଁ। କିନ୍ତୁ ଏଥର ସବୁ ସହନଶୀଳତାର ସୀମା ଟପି ଯାଇଚି। ଛୋଟ ଛୋଟ ପିଲା, ଗର୍ଭବତୀ ସ୍ତ୍ରୀମାନେ ଯେମିତି କଲବଲ ହେଇ ମାତ୍ର କେଇ ମିନିଟ୍ ଭିତରେ ସମସ୍ତଙ୍କ ଆଖି ଆଗରେ ମରିଗଲେ ତାହା ଯେ କୌଣସି ଲୋକର ପଥର ହୃଦୟକୁ ମଧ୍ଧ ବିଦାରୀ ପକେଇବ। ପୁଲିସ ଆସିଲା ବେଳକୁ ଶବଗୁଡ଼ାକ ଗୋଟାଏ ଜାଗାରେ ଗଦେଇ ଦିଆ ଯାଇଥାଏ। କି ମର୍ମନ୍ତୁଦ, କି କରୁଣ ସେ ଦୃଶ୍ୟ। କାହାର ଅନ୍ତବୁଜୁଳା ବାହାରି ପଡ଼ିଚି ତ ଆଉ କାହାର ମୁଣ୍ଡଟା ପିଠା ପାତିଆ ପରି ଚେପା ହେଇ ଯାଇଚି।

ମୁଖ୍ୟମନ୍ତ୍ରୀ ଟେଲିଫୋନ କଲେ ଜିଲ୍ଲାମାଜିଷ୍ଟ୍ରେଟ୍‌ଙ୍କ ପାଖକୁ। ତାଙ୍କୁ ଖବର କିଏ ଦେଲା କେଜାଣି।

ଜିଲ୍ଲା ପୁଲିସ ମୁଖ୍ୟ ସେତେବେଳେ ଜିଲ୍ଲାମାଜିଷ୍ଟ୍ରେଟ୍‌ଙ୍କ ଅଫିସରେ ବସି ପରିସ୍ଥିତି ସମ୍ପର୍କରେ ଆଲୋଚନା କରୁଥିଲେ। କିପରି ଭାବରେ ଅବସ୍ଥାକୁ ନିୟନ୍ତ୍ରଣ କରି ହେବ, ଏହାହିଁ ଥିଲା ସେମାନଙ୍କର ଆଲୋଚନାର ବିଷୟବସ୍ତୁ। ସେମାନେ ଚାହୁଁଥିଲେ ପରିସ୍ଥିତି ଯାହା ହେଉନା କାହିଁକି, ସେ ଘଟଣା ଭିତରେ ରାଜନୀତି ପଶିବା ପୂର୍ବରୁ ଯେମିତି ସେମାନେ ତାର ଗୋଟାଏ ସମାଧାନ କରି ଦିଅନ୍ତି। କାରଣ ସେମାନେ ଜାଣୁଥିଲେ ଯେ ଥରେ ରାଜନୀତି ତା ଭିତରକୁ ପଶିଗଲେ ଆଉ ତାର ସମାଧାନର ସୂତ୍ରଟିଏ ମିଳିବା କାଠିକର ପାଠ ହେଇ ପଡ଼ିବ। ପ୍ରଶାସନର ଡର ପରିସ୍ଥିତିକୁ ନ ଥାଏ। ଥାଏ ରାଜନୀତିକୁ।

ରାଜନୀତି ଗୋଟାଏ ମାରାତ୍ମକ ଜନ୍ତୁ। ତାର ଶରୀର ଥାଇ ମଧ୍ୟ ସେ ଅଶରୀରି। ତାର ଶରୀରର ଉପସ୍ଥିତି ନ ଥିଲେ ମଧ ତାର ଅଲୌକିକ ପ୍ରଭାବ ଏତେ ଶକ୍ତିଶାଳୀ ଯେ କୌଣସି ହେଉଥିବା କାମକୁ ସେ ଓଲଟେଇ ଦିଏ। ସଜ ମାଂସରେ ପୋକ ପକେଇ ଦିଏ। ନଚେତ ପୋକ ସାଲୁ ବାଲୁ ହେଉଥିବା ଘାଂଗାରୁ ସଜ ମାଂସ ବାହାର କରି ଆଣେ। ଆମର ଓ ପାର୍ଲାମେଣ୍ଟାରୀ ଡିମୋକ୍ରେସି ତାକୁଇ ନେଇ ଗର୍ବ କରେ।

ପ୍ରଶାସନର ମୁଣ୍ଡ ସେଇଠି ଘୂରେଇ ଯାଏ। ତେଣୁ ସେମାନେ ଚାହୁଁଥିଲେ ରାଜନେତାମାନେ ଜାଣିବା ପୂର୍ବରୁ ଯେମିତି ରାସ୍ତାଟା କ୍ଲିଅର ହେଇଯାଉ। ସେଇଟା ଆଉ ବେଶି ସମୟ ଚାଲୁ ରହିବା ଉଚିତ ନୁହେଁ। କିନ୍ତୁ ସେ କଥା ହେଇ ପାରୁଚି କୋଉଠି? ରାଜନୀତି ଜାଣିବ ନାହିଁ ଅଥଚ କାମଟାଏ ହେଇଯିବ ଏ କଥା କିପରି ସମ୍ଭବ? ଆଜିକାଲି ଇନଫରମେସନ ଟେକନୋଲୋଜି ଏଇ ଅବସ୍ଥାକୁ ଆସିଲାଣି। ଯେକୌଣସି ଘୃଣ୍ୟ ଅପରାଧ ଅର୍ଥାତ୍ ମର୍ଡ଼ର ଡକାୟତି ଠାରୁ ଆରମ୍ଭ କରି ନାରୀ ଧର୍ଷଣ ଓ ଚୋରା ଅସ୍ତ୍ରଶସ୍ତ୍ର ଚାଲାଣ ଯାଏ ଯେ କୌଣସି ଘଟଣା ଘଟିବା ପୂର୍ବରୁ ପ୍ରଥମେ ରାଜନେତାମାନେ ତାର ଖବର ପାଇ ଯାଆନ୍ତି। ସେମାନେ ତା ସହିତ ଆଗରୁ ଥାଆନ୍ତି କହିବା ଠିକ୍ ହେବ ନାହିଁ।

ଜିଲାମାଜିଷ୍ଟ୍ରେଟ ଘଟଣା ଠାରୁ ତିନିଶହ ପଚାଶ କିଲୋମିଟର ଦୂରରେ ଥିବା ମୁଖ୍ୟମନ୍ତ୍ରୀ ରାଜଧାନୀରେ ବସି ରାତି ପାହିଲା ବେଳକୁ ଏ ଖବର ପାଇବା କଥାରେ ମୋଟେ ବିସ୍ମିତ ହେଲେ ନାହିଁ। ସେ ଟେଲିଫୋନ୍ ଉଠେଇ ଅତି ସ୍ୱାଭାବିକ ଭାବରେ କହିଲେ, ଆପଣ ମୋଟେ ବ୍ୟସ୍ତ ହୁଅନ୍ତୁ ନାହିଁ, ସାର୍। ସବୁ ଦାୟିତ୍ୱ ମୋ ଉପରେ ଛାଡ଼ି ଦିଅନ୍ତୁ। ଏସ୍.ପି. ଏବେ ଏଇଠି ଅଛନ୍ତି। ମୁଁ ତାର ଗୋଟାଏ ସହଜ ଓ ସରଳ ସମାଧାନର ସୂତ୍ର ବାହାର କରୁଚି।

କେତେଲୋକ ମରିଚନ୍ତି?

ସତୁରୀ ଲୋକ ମରିଚନ୍ତି?

ଏତେ ଲୋକ ସେ ବସରେ କେମିତି ଥିଲେ? ମୁଖ୍ୟମନ୍ତ୍ରୀ ପ୍ରଶ୍ନ କଲେ।

ମଫସଲ ଅଞ୍ଚଳର ବସ। ଏଥିରେ କେପାସିଟି ଅପେକ୍ଷା ଆଠ ଦଶ ଗୁଣ ଅଧିକ ଆସିବା ସ୍ୱାଭାବିକ କଥା। ପିଆଜ ବସ୍ତା ପରି ଭର୍ତ୍ତି ହେଇ ଥାଆନ୍ତି। ଭିତରେ ଯେତିକି ଥାଆନ୍ତି, ତା ଉପରେ ମଧ୍ୟ ସେତିକି ଥାଆନ୍ତି। ସେମାନଙ୍କୁ ବାଧା ଦେଇ ହେବନି, ଏବଂ ତାର ବିକଳ୍ପ ରାସ୍ତା ମଧ ନାହିଁ।

ମୁଖ୍ୟମନ୍ତ୍ରୀ ଆଉ ବେଶି କଥା ହେବାକୁ ଚାହୁଁ ନ ଥିଲେ। ସେ କହିଲେ, ଠିକ୍ ଅଛି, ତମେ ତାକୁ ଟେକେଲ୍ କର। ଯଦି ଦରକାର ହୁଏ ତେବେ କହିଦିଅ ପ୍ରତ୍ୟେକ ମୃତର ପରିବାରକୁ ୧ ଲକ୍ଷ ଏବଂ ଆଘାତପ୍ରାପ୍ତଙ୍କୁ ୧୦ ହଜାର କରି ଦିଆଯିବ। ତା ପରେ ଏ କଥା ମଧ କହିଦିଅ ଯେ ରାସ୍ତାର କାମଟା ଆସନ୍ତା କାଲିଠାରୁ ଆରମ୍ଭ ହେବ।

ଏଇଟା ଅନେକ ବେଶୀ ହେଇଯିବ ସାର। ମୁଁ ଯାହା ଦେଖିଲି ବସଟା ସେଇ ଆଦିବାସୀ ଅଞ୍ଚଳରୁ ଆସୁଥିଲା। ତେଣୁ ତାକୁ ଟିକିଏ.....

ଠିକ୍ ଅଛି, ୫୦ ହଜାର କରି ଦିଅ ଏବଂ ଗୋଟାଏ ମାଜିଷ୍ଟ୍ରେରୀ ଏଇ....ନାଇଁ ନାଇଁ ଆର.ଡ଼ି.ସି. ତାର ତଦନ୍ତ କରି ସାତ ଦିନ ଭିତରେ ରିପୋର୍ଟ ଦେବେ

ବୋଲି କହି ଦିଅ। ଆଉ ଗୋଟେ କାମ କର। ସେ ବସ ମାଲିକ ନାଁରେ ଗୋଟାଏ କେଶ ମଧ୍ୟ କରିଦିଅ।

ସେଥିରେ ଆମକୁ ଟିକିଏ ଅସୁବିଧା ହେଇପାରେ ସାରା ବସଟା ଆମ ବିରୋଧିଦଳ ନେତାଙ୍କ ସ୍ତ୍ରୀଙ୍କ ନାଁରେ ଅଛି।

ଆଃ ତୁମେ ଏକଥା ଚିନ୍ତା କାହିଁକି କରୁଚ ? ଘଟଣାର ରାଜନୈତିକ ଅଂଶଟାକୁ ଆମକୁ ଛାଡ଼ିଦିଅ। ମୁଁ ତାର ବ୍ୟବସ୍ଥା କରିବିନି ?

ମୁଖ୍ୟମନ୍ତ୍ରୀ ଫୋନ୍ ଛାଡ଼ି ଦେଲେ।

ସେଦିନ ଷ୍ଟେଟ୍ ଗେଷ୍ଟ ହାଉସର ଏକ ନମ୍ବର ରୁମରେ ମୁଖ୍ୟମନ୍ତ୍ରୀ ଆମକୁ ଜାତୀୟ ରାଜପଥର ଏଇ ଅତୀତ ଇତିହାସ କଥା କହି ହସି ହସି ଗଡ଼ି ଯାଉ ଥାଆନ୍ତି। ମୁଖ୍ୟମନ୍ତ୍ରୀ ଯେ ଏତେ ରହସ୍ୟପ୍ରିୟ ସେ କଥା ମୁଁ ସେଇଦିନ ଜାଣିଲି। ଗୋଟିଏ ଛୋଟ କଥାକୁ ସେ ଏତେ ସୁନ୍ଦର ଭାବରେ ସଜେଇ ଏବଂ ଭାଷାରେ ରଙ୍ଗ ଦେଇ କହି ପାରୁ ଥିଲେ ଯେ ଆମେ ବେଳେ ବେଳେ ହସି ହସି ବେଦମ ହେଇ ଯାଉଥିଲୁଁ। ଆମେ ଥିଲୁଁ ଚାରିଜଣ। ଆମେ ଦୁଇଜଣ ବିଧାୟକ ଏବଂ ମୁଖ୍ୟମନ୍ତ୍ରୀଙ୍କ ସହିତ ଅବକାରୀ ମନ୍ତ୍ରୀ। ଷ୍ଟେଟ ଗେଷ୍ଟ ହାଉସଟା ସେ ଦିନ ଥିଲା ଏକଦମ ନିର୍ଜନ। ଖାଲି ରୋଷେଇ ଘରେ ଦୁଇ ତିନିଜଣ କର୍ମଚାରୀଙ୍କୁ ଛାଡ଼ି ଆଉ ସମଗ୍ର ଅଞ୍ଚଳରେ କାଉ କୋଇଲିଟିଏ ମଧ ନ ଥିଲା। ଏପରିକି ଆମର ଗାଡ଼ିଗୁଡ଼ିକ ଆମକୁ ଛାଡ଼ି ଅନ୍ୟତ୍ର ଚାଲି ଯାଇଥିଲେ ଏବଂ ମୁଖ୍ୟ ଫାଟକଟା ଏକ ପ୍ରକାର ବନ୍ଦ ରଖିବାକୁ କୁହା ଯାଇଥିଲା। ସମ୍ପୂର୍ଣ୍ଣ ଗୋପନୀୟତା ରକ୍ଷା କରିବା ଉଦ୍ଦେଶ୍ୟରେ ଅତିଥିଶାଳାର ଅଧିକାଂଶ ଆଲୁଅ ଲିଭାଇ ଦିଆ ଯାଇଥିଲା। ଯେପରିକି ବାହାରୁ ଗୋଟାଏ ଧାରଣା ହେବ ଯେ ଆଜି ଅତିଥିଶାଳାରେ ଜନମାନବ କେହି ନାହାନ୍ତି।

ରାତି ସେତେବେଳକୁ ଦଶଟା ପାଖାପାଖି। ଅବକାରୀ ମନ୍ତ୍ରୀ ଖାଲି ଗ୍ଲାସଟା ହାତରେ ଧରି ଏପାଖ ସେପାଖ ଅନାଉ ଥାଆନ୍ତି। ଆମେ ଦୁହେଁ ଗ୍ଲାସ ଥୋଇ ଦେଇ ଥାଉଁ। ମୋର ସେତେବେଳକୁ ଆଉ ମୋଟେ ଇଚ୍ଛା ନ ଥିଲା। କିନ୍ତୁ ମୋର ବନ୍ଧୁ ଜଣେ ଦକ୍ଷ ଲୋକ ହେଇ ଥିବାରୁ ସେ ଗ୍ଲାସ ପୂରା ଖାଲି କରି ନ ଥିଲେ। ଯଦିଓ ଯେ କୌଣସି ବାସ୍ତବ ଯୁକ୍ତିକୁ ନେଇ ଦେଖିଲେ ଗ୍ଲାସଟା ଖାଲି ଥିଲା ବୋଲି କହି ହେବ।

ମୁଖ୍ୟମନ୍ତ୍ରୀ ଆମ ସମସ୍ତଙ୍କ ଆଡ଼କୁ ଥରେ ଭଲ କରି ଦେଖି ନେଲେ ଏବଂ କହିଲେ ବାସ୍ ଏତିକିରେ ସରିଗଲା ?

ଆମେ ସମସ୍ତେ ହସି ଉଠିଲୁଁ। ଅବକାରୀ ମନ୍ତ୍ରୀଙ୍କୁ ସେଇ ସେତିକ ଯଥେଷ୍ଟ ଥିଲା। ସେ ସଙ୍ଗେ ସଙ୍ଗେ ପୁଣି ଥରେ ଆରମ୍ଭ କଲେ। ମୋର ବନ୍ଧୁ ସଙ୍ଗେ ସଙ୍ଗେ

ହାତ ବଢ଼େଇ ଦେଲେ। ଆଉ ମୁଁ ଲାଜେଇ ଯାଇ ମନା କରୁଥିଲେ ମଧ୍ୟ ଦେଖୁଁ ଦେଖୁଁ ଗ୍ଲାସର ବେକ ଭର୍ତ୍ତି ହେଇଗଲା।

ମୁଖ୍ୟମନ୍ତ୍ରୀ କହିଲେ ଏଇ ଏତକ ସାରିଦିଅ। ତା ପରେ ଖାଇବାକୁ ଯିବା। ସେ ପ୍ଲେଟ୍‌ରୁ କେତୋଟି ପକୋଡ଼ି ଓ ଗୋଟିଏ ସିଝା ଲଂକା ଉଠାଇ ନେଲେ।

ମୁଁ କେତୋଟି ଭଜା କାଜୁ ଉଠେଇ ନେଲି। ତାକୁ ଦେଖି ମୁଖ୍ୟମନ୍ତ୍ରୀ କହିଲେ, ଆରେ ସେ ଗୁଡ଼ାକ କଅଣ ଖାଉଚ? ଭଲ ଜିନିଷ ଖାଉନ? ଖାଇବାରେ ଗୋଟାଏ ଲାଜ କଅଣ? ଯାହା ଅଛି ନିଅ। ଯଦି ଅନ୍ୟ କିଛି ଦରକାର ଅଛି ମଗେଇ ପଠାଅ। ସେ ଅବକାରୀ ମନ୍ତ୍ରୀଙ୍କୁ ଅନେଇ କହିଲେ, ଦେଖିଲ ଆଉ କଅଣ ଅଛି?

ସେ କହିଲେ ମୁଁ ବେହେରାକୁ କହିଚି। ସେ ଚିଙ୍ଗୁଡ଼ି ଭଜା ଓ କଲିଜା ଭଜା ଆଣୁଚି।

"ମୁଁ ସେଇ ରାଜରାସ୍ତା କଥା କହୁଚି।" ମୁଖ୍ୟମନ୍ତ୍ରୀ ପୁଣି କଥା ଆରମ୍ଭ କଲେ। "ଯୋଉ କାମଟା ଦଶ ପନ୍ଦର ବର୍ଷ ତଳେ ପନ୍ଦର କୋଟିରେ ସରିବ ବୋଲି ଅଟକଳ ହେଇ ଥିଲା ସେଇଟାରେ ଏବେ ଶହେ କୋଟି ଖର୍ଚ୍ଚ ହେବ। ବର୍ତ୍ତମାନ ଅବସ୍ଥାରେ ଶହେ କୋଟି କଅଣ କମ ହେଇଚି?"

ମୁଁ କହିଲି· "କିନ୍ତୁ ସେ ଦିନତ ଆପଣ ନିଜେ ପ୍ରତିଶ୍ରୁତି ଦେଇ ଆସିଲେ। ଆପଣବିତ ଦେଖିଲେ ଆପଣଙ୍କ ସାମନାରେ ମୁଁ କହିଲି, ଏଥର ଯଦି ଏ ରାସ୍ତା ତିଆରି ନ ହୁଏ, ତେବେ ମୁଁ ଆଉ ନିର୍ବାଚନ ବେଳେ ତୁମ ପାଖକୁ ଆସିବି ନାହିଁ। ସେମାନେ ଏବେ ଗୋଟାଏ କମିଟି କରିଚନ୍ତି। ମାନେ ଚଇତନପୁର ସହରର ଇତିହାସରେ ଏଇ ପ୍ରଥମ ଥର ବୋଧେ ସେମାନେ ଆଖି ଖୋଲିଚନ୍ତି। ସେମାନେ ଜାଣିଲେଣି ଯେ ସେମାନେ ଯଦି ଏଣିକି ସଜାଗ ନ ରହନ୍ତି ତେବେ ସେମାନେ ସମସ୍ତେ ଏଇ ବସ ଯାତ୍ରୀଙ୍କ ପରି ଅକାଳରେ ମରିବେ।"

"ଆଃ, ମୁଁ ତ ସେଇ କଥା କହୁଚି। ଖାଲି ସେମାନେ କାହିଁକି ଆମ ଦେଶର ସମସ୍ତେ ସଚେତନ ରହିବା ଉଚିତ୍। ସେମାନେ ଯଦି ଆଗରୁ ସଚେତନ ହେଇ ଥାଆନ୍ତେ ତେବେ ଏତେବେଳକୁ କେବେ ଠାରୁ ସେ ରାସ୍ତାଟା ତିଆରି ସରନ୍ତାଣି।"

"ମୁଁ ମୋ ବାପାଙ୍କ ସମୟର କଥା କହୁଚି। ସେ ଯେତେବେଳେ ମୁଖ୍ୟମନ୍ତ୍ରୀ ଥିଲେ ସେତେବେଳେ ଯଦି ସେଠାର ବିଧାୟକ ମହେନ୍ଦ୍ର ମିଶ୍ର ମୁଖ୍ୟମନ୍ତ୍ରୀଙ୍କ ସହିତ ସହଯୋଗ କରି ଥାଆନ୍ତେ, ତେବେ ଆଜି ସେ ସହର ଓ ସେ ରାସ୍ତାକୁ ଦେଖି ହେଉ ନ ଥାଆନ୍ତା। କିନ୍ତୁ ସେ ବିରୋଧି ଦଳ ହିସାବରେ ତାଙ୍କ ଜିଦ୍ ଛାଡ଼ିଲେ ନାହିଁ କି ମୋ ବାପା ତାଙ୍କ ନୀତିକୁ ମଧ୍ୟ ଛାଡ଼ିଲେ ନାହିଁ। ଫଳ ହେଲା ଏଇଆ ଯେ ନିରିହ ଲୋକମାନେ ହଇରାଣ ହେଲେ। ମାନେ ଉନ୍ନୟନମୂଳକ କାମଟା ମାଡ଼ ଖାଇ ଗଲା।"

"କିନ୍ତୁ ଆମେ ଦୁହେଁତ ଆପଣଙ୍କୁ ପୂରା ସହଯୋଗ ଦେବୁଁ। ଏ କଥାତ ଆମେ ଆଗରୁ କହିଚୁଁ। ଏଥର ଯଦି ସେ ରାସ୍ତା ତିଆରି ନହୁଏ ତେବେ ସେମାନେ ଭୋଟ ବର୍ଜନ କରିବେ।

ମୁଖ୍ୟମନ୍ତ୍ରୀ ହସିଦେଲେ। ସାମାନ୍ୟ ଟିକିଏ ଓଠ ତାଙ୍କର ମେଲି ଗଲା। ଅବକାରୀ ମନ୍ତ୍ରୀ ସେତକରୁ ମୁଖ୍ୟମନ୍ତ୍ରୀଙ୍କ କଥା ବୁଝିଗଲେ। ସେ କହିଲେ, "ସେଥିରେ କଅଣ ଅଛି? ଏବେତ ଆମ ଦେଶରେ ପ୍ରାୟ ୬୦ ପରସେଣ୍ଟ ଲୋକ ଭୋଟ ଦେବାକୁ ଆସୁ ନାହାନ୍ତି। ନ ଆସନ୍ତୁ। କାହାର କଅଣ ଯାଏ? ଦେଶରୁ ଏଥିରେ ଗଣତନ୍ତ୍ର ଲୋପ ପାଇବ କି? ଆମ ଦେଶରେ ଗୋଟିଏ ଲୋକ ଭୋଟ ଦେଉଥିବା ଯାଏ ଆମ ପାର୍ଲାମେଣ୍ଟ ଓ ଆସେମ୍ବ୍ଲି ବଞ୍ଚିଥିବ ଏବଂ ମନ୍ତ୍ରୀମାନେ ଲୋକମାନଙ୍କୁ ଶାସନ କରୁଥିବେ। ଏହାହିଁତ ଗଣତନ୍ତ୍ରର ନୀତି।"

କଥାଯୋଡ଼ି ମୁଖ୍ୟମନ୍ତ୍ରୀ କହିଲେ, "ଭୋଟ ନଦେଲେ ସେଇମାନଙ୍କର କ୍ଷତି। ଆଉ କାହାର? ସାମ୍ବିଧାନିକ ଅଧିକାରଟିକୁ ସମସ୍ତେ ସାବ୍ୟସ୍ତ କରିବା ଉଚିତ୍। ଯେ ଯେଉଁ ଚିହ୍ନରେ ଦେଉ ବା ଯାହାକୁ ଦେଉ।"

ମୁଁ ଦେଖିଲି ମୁଖ୍ୟମନ୍ତ୍ରୀଙ୍କ ଆଖି ସେତେବେଳକୁ ରଙ୍ଗେଇ ଆସିଲାଣି।

ଗେଷ୍ଟ ହାଉସର ମେନେଜର ଆସି ଠିଆ ହେଲେ। ସେତେବେଳକୁ ରାତି ୧୨ଟା ପାଖାପାଖି।

ମୁଖ୍ୟମନ୍ତ୍ରୀ ତାଙ୍କୁ ଦେଖିଲେ ଏବଂ ସାମାନ୍ୟ ହସି ପଚାରିଲେ "କଅଣ ସବୁ ରେଡି ହେଇଗଲାଣି?" ତାପରେ ସେ ଅବକାରୀ ମନ୍ତ୍ରୀଙ୍କୁ ଅନେଇ ଧୀର ସ୍ୱରରେ କହିଲେ "ଆମରତ ଏ ଆଡ଼େ ଏ ଯାଏ କିଛି ହେଇନି।"

ଅବକାରୀ ମନ୍ତ୍ରୀ ଚମକି ପଡ଼ିଲେ। ସତରେତ, ଅସଲ କଥା ଆମେ ସମସ୍ତେ ଭୁଲି ଯାଇଚେ। ସେ ମେନେଜରଙ୍କୁ କହିଲେ "ଆପଣ ଆଉ ଟିକିଏ ଅପେକ୍ଷା କରନ୍ତୁ। ମୁଁ ଆପଣଙ୍କୁ ଖବର ଦେବି।"

ସେ ଚାଲିଗଲେ।

"କଥାଟା ଆରମ୍ଭ କରୁନ କାହିଁକି?" ମୁଖ୍ୟମନ୍ତ୍ରୀ କହିଲେ।

ଅବକାରୀ ମନ୍ତ୍ରୀ କହିଲେ, "କଥାଟାତ ତାଙ୍କୁ କୁହାଯାଇଚି। ଏଥିରେତ ଆଉ ନୂଆ କିଛି ନାହିଁ। ତେବେ ଅରବିନ୍ଦ ବାବୁ କହୁଛନ୍ତି ରାସ୍ତାଟା ତିଆରି ନ ହେଲେ ସେ ଆଉ ଗାଁକୁ ମଧ୍ୟ ଯାଇ ପାରୁନାହାନ୍ତି। ସମସ୍ତେ ତାଙ୍କୁ ସେଇ କଥା ପଚାରୁଚନ୍ତି। ସେ ଅଞ୍ଚଳରେ ଏବେ ଲୋକଙ୍କ ମୁହଁରେ କେବଳ ସେଇ ଗୋଟିଏ କଥା। ଦ୍ୱିତୀୟ କଥା ନାହିଁ।"

ମୁଁ କଥା ଯୋଡ଼ିଲି। "ସାର୍, ଆଉ ମାତ୍ର ଛଅମାସ ରହିଲା ଇଲେକସନକୁ। ଏବେଠୁ ପ୍ରସ୍ତୁତି ପର୍ବ ଆରମ୍ଭ ନ କଲେ ମୋର ସ୍ଥିତି ଉଡ଼ି ଯିବ। ମୁଁ ଅମାନତ ହରେଇବି। କାରଣ ସେ ଦିନ ଯେମିତି ସେମାନେ ସମଗ୍ର ରାସ୍ତା ଅବରୋଧ କରି ଦୀର୍ଘ ଦୁଇଦିନ କାଳ ବସି ରହିଲେ ଏବଂ ଗୋଟାଏ ଫାର୍ମ କମିଟମେଣ୍ଟ ନ ହେଲେ ରାସ୍ତା ଛାଡ଼ିବେ ନାହିଁ ବୋଲି କହିଲେ, ସେତେବେଳେ ମୁଁ ମୋ ଦଳ କଥାକୁ ଅବଜ୍ଞା କରି ଆପଣଙ୍କ ପାଖରେ ଠିଆ ହୋଇ ନ ଥିଲେ ସେମାନେ କଦାପି ଛାଡ଼ି ନ ଥାଆନ୍ତେ।"

ଅବକାରୀ ମନ୍ତ୍ରୀ କହିଲେ, "ସାର, ଅରବିନ୍ଦ ବାବୁ ଠିକ୍ କହୁଚନ୍ତି। ସେ ଦିନ ସେମାନଙ୍କ ପାଖରୁ ଆପଣ ଏକ ପ୍ରକାର ଜାମିନ୍‌ରେ ଆସିଚନ୍ତି। ଗୋଟାଏ ଜିଦ୍। ମରିବୁଁ ପଛେ ହଟିବୁ ନାହିଁ।"

ମୁଖ୍ୟମନ୍ତ୍ରୀ ହସିଲେ। ସେ ସବୁ କଥାରେ ଏମିତି ହସନ୍ତି। କହିଲେ "ମୁଁ ଗୋଟାଏ କଥା ଦେଖି ସେ ଦିନ ଆଶ୍ଚର୍ଯ୍ୟ ହେଲି। ସେଠାକାର ଲୋକମାନଙ୍କର ସେଦିନ ଏତେ ଉତ୍ତେଜନା, ଏତେ ଜାଗୃତି ଆସିଲା କେଉଁଠୁ ? ସେମାନେତ ଇତିହାସ ବଦଳେଇ ଦେଲେ।"

ମୁଁ କହିଲି "ସେମିତିତ ହୁଏ। ଯେତେବେଳେ ଅତ୍ୟାଚାର ବା ଅନ୍ୟାୟଟା ସୀମା ଟପିଯାଏ ସେତେବେଳେ ବରାବର ଲୋକଙ୍କ ଭିତରେ ଜାଗରଣ ସୃଷ୍ଟି ହୁଏ। ସେତେବେଳେ ସେମାନଙ୍କୁ ଆଉ କେହି ସମ୍ଭାଳି ପାରେ ନାହିଁ। ଗୁଳି ବନ୍ଧୁକକୁ କିଏ ଖାତିର କରେ ?"

ଅବକାରୀ ମନ୍ତ୍ରୀ କହିଲେ, "ହଁ ସେ ସବୁ ଠିକ୍ ଯେ। କିନ୍ତୁ ଅସଲ କଥାଟା ଏବେ ରାସ୍ତା ଉପରେ।" ସେ ପୁଣି ମୁଖ୍ୟମନ୍ତ୍ରୀଙ୍କୁ ଅନେଇଲେ।

ମୁଖ୍ୟମନ୍ତ୍ରୀ ଇଙ୍ଗିତର ଅର୍ଥ ବୁଝିଗଲେ। କହିଲେ, "ରାସ୍ତାଟା କିଛି ବଡ଼ କଥା ନୁହେଁ। ଏଇନେ କହିଲେ ଆରମ୍ଭ ହେଇ ଯିବ। ଯୋଉ କାମଟା ଆଜିକୁ ପଚାଶ ବର୍ଷ ହେଲା କେବଳ ରାଜନୀତିର ଦଳାଚକଟା ଭିତରେ ଉଠ୍ ପଡ଼୍ ହେଉଥିଲା ତାକୁ କାଲି ସକାଳେ ଯାଇ ଶିଳାନ୍ୟାସ ଦେଇ ପାରିବି। ସେଇଟା କିଛି ବଡ଼ କଥା ନୁହେଁ। କିନ୍ତୁ ଅସଲ କଥାଟାତ ସେଠି ନାହିଁ। ମୁଁ ସେ ପ୍ରକାର ରାଜନୀତିରେ ବିଶ୍ୱାସ କରେଁ ନାହିଁ। ଧୋକା ଦେଇ କୁଆଡ଼େ ଯିବା ? କାଲିତ ପୁଣି ସେଇମାନଙ୍କ ଠାକୁ ଯିବାକୁ ହେବ। ସେତେବେଳେ ?"

"ମୁଁ ସାର ସେଇ କଥା କହୁଚି। ସେ ରାସ୍ତାଟା ନ ହେଲେ ଆମ ସମସ୍ତଙ୍କ ମୁଣ୍ଡ ତଳକୁ ହେଇଯିବ।"

ମୁଖ୍ୟମନ୍ତ୍ରୀ କହିଲେ, "ଖାଲି କଅଣ ସେତିକି ? ବିରୋଧି ଦଳ ତାର ଫାଇଦା ନବ ନାହିଁ ? ତାକୁଇ ସେମାନେ ସାରା ରାଜ୍ୟରେ ଗୋଟାଏ ଇସ୍ୟୁ କରି ଦେବେ।

ହୁଏତ ତାକୁ ସେମାନଙ୍କର ଇଲେକସନ୍ ମେନିଫେଷ୍ଟୋରେ ମଧ୍ୟ ଯୋଡ଼ି ଦେବେ। ତା ପରେ ଆମ ଅବସ୍ଥା କଅଣ ହେବ ? ଆମ ସଂଖ୍ୟା ଅଧାରୁ ତଳକୁ ଖସିଯିବ।''

ଅବକାରୀ ମନ୍ତ୍ରୀ କହିଲେ ''ସାରା ରାଜ୍ୟର ରାଜନୈତିକ ମାନଚିତ୍ର ପୂରା ଓଲଟା ହେଇଯିବ।''

''ଆପଣମାନେ ଆମକୁ ଟିକିଏ ସାହାଯ୍ୟ କରନ୍ତୁ। ଖାସ କରି ଆପଣ ଦୁହେଁ ଚାହିଁଲେ ସେତକ ହେଇ ପାରିବ।'' ମୁଖ୍ୟମନ୍ତ୍ରୀ ମୋତେ ଅନେଇଲେ।

''ସାର୍ କହୁ ନାହାନ୍ତି। ମୁଁ କହିଲି।

''ଆପଣମାନଙ୍କର ସେ ଛୋଟିଆ ଦଳଟା କାହିଁକି ଅଲଗା ହେଇ ରହିଚି ? ଆମ ସାଙ୍ଗରେ ମିଶି ଯାଉ ନାହାନ୍ତି ? ଆସନ୍ତୁ, ଗୋଟାଏ ମହାସ୍ରୋତରେ ମିଶି କାମ କରିବା। ଲକ୍ଷ୍ୟ ଓ ଉଦ୍ଦେଶ୍ୟ ଯେତେବେଳେ ଗୋଟିଏ......''ମୁଖ୍ୟମନ୍ତ୍ରୀ ଗ୍ଲାସଟାକୁ ଶେଷ କରି କହିଲେ।

ଆମେ ଦୁହେଁ ତଳକୁ ମୁହଁ ପୋତିଲୁଁ। ତା'ପରେ ମୁଁ କହିଲି ''ଆମକୁ ଟିକିଏ ଭାବିବାକୁ ସମୟ ଦିଅନ୍ତୁ। ସାଥିରେ ଅନ୍ୟ ତିନିଜଣ ମଧ୍ୟ ଅଛନ୍ତି।''

ଅବକାରୀ ମନ୍ତ୍ରୀ କହିଲେ ''ସମସ୍ତେ କୋଟିଏ କୋଟିଏ କରି ନିଅନ୍ତୁ। ଯେତେବେଳେ କହିବେ, ସେତେବେଳେ ଘରେ ପହଞ୍ଚେଇ ଦିଆଯିବ।'' ମୁଖ୍ୟମନ୍ତ୍ରୀ କହିଲେ ''ଯଦି ନିହାତି ଅସୁବିଧା ହେଉଚି, ତେବେ ଆପଣ ଦୁହେଁ ଅନ୍ତତଃ ବର୍ତ୍ତମାନ ପାଇଁ ଗୋପନରେ ଆମ ଆଡ଼କୁ ଆଉଜି ଆସନ୍ତୁ।''

ମୁଁ ପୁଣି ଥରେ ତାଙ୍କୁ ଫାଙ୍କା ଆଖିରେ ଅନେଇଲି।

ଅବକାରୀ ମନ୍ତ୍ରୀ କହିଲେ ''ବୁଝି ପାରିଲେନି ? ଆସନ୍ତା କାଲି ରାଜ୍ୟ ସଭା ପାଇଁ ନିର୍ବାଚନ। ଆପଣ ଦୁହେଁ ସାହାଯ୍ୟ କଲେ ଆମର ତିନିଜଣ ଯାକ ଆସିଯିବେ।''

''ଆଉ ରାସ୍ତାଟା ?'' ମୁଁ ପଚାରିଲି।

''ତା'ପରଦିନ ଶୁଭ ଦେଇ ଦେବା।'' ମୁଖ୍ୟମନ୍ତ୍ରୀ କହିଲେ।



*('ଏଇପରି ଆମ ସଂପର୍କ' ପୂଜା ସଂଖ୍ୟା, ୨୦୦୦)*

# ଶେଷ ସହରର ଶାଏରୀ

ସେଇଟା ମୋର ନିତି ଦିନିଆ କାମ। ମୁଁ ବିଛଣାକୁ ଉଠିଲା ମାତ୍ରେ କାନ୍ଥ ଘଣ୍ଟାରେ ପାଞ୍ଚଟା ବାଜେ। ବାଥ୍‌ରୁମ୍‌ର କବାଟ ଖୋଲିଯାଏ। ମାତ୍ର ପାଞ୍ଚ ମିନିଟ୍ ଭିତରେ କାମ ସାରି ମୁଁ ବାହାରି ଆସେଁ। ପି.ଟି. ଡ୍ରେସ୍‌ରେ ମୁଁ ବାହାରି ପଡ଼ିଲା ବେଳକୁ ରାଜା ଠିଆ ହେଇ ପଡ଼େ। ଏକାନ୍ତ ପ୍ରଭୁଭକ୍ତ ପରି ସେ ମୋ ସାମନାରେ ଠିଆ ହେଇ କୁର୍ଣ୍ଣିସ୍ କରିବା ଭଙ୍ଗୀରେ ମୋର ଆଦେଶକୁ ଅପେକ୍ଷା କରେ। ରାତିରେ ବନ୍ଧା ହେଇଥିବା ବେଲ୍‌ଟ୍‌ଟିକୁ ତା ବେକରୁ ଫିଟେଇ ଦେଇ କହେଁ, "ପ୍ଲିଜ୍ ୱେଟ୍।" ସେ ତା'ର ଚାରିଟି ଗୋଡ଼କୁ ଅତି ସମ୍ଭ୍ରମ ସହକାରେ ଆୟତ୍ତ କରି ନେଇ ବସିପଡ଼ି ମୋତେ ଓ ମୋର ଗତିବିଧିକୁ ଲକ୍ଷ୍ୟ କରୁଥାଏ। ମୁଁ ଲାଇଫ୍ ସାଇଜ ଦର୍ପଣ ସାମନାରେ ଠିଆ ହେଇ ପୁଣି ଥରେ ଆପାଦ ମସ୍ତକ ଦେଖି ସାରିଲା ପରେ ବାହାରିଲା ବେଳକୁ ସେଲ୍‌ଫ ଉପରୁ ଷ୍ଟିକଟା ନେଇ ହାତରେ ଧରେଁ ଏବଂ ଅନ୍ୟ ହାତରେ କେପ୍‌ଟିକୁ ଆଉ ଥରେ ସଜାଡ଼ି ନିଏଁ, ଯେପରି ମୁଣ୍ଡର ସମ୍ପୂର୍ଣ୍ଣ ଚନ୍ଦା ହେଇ ଯାଇଥିବା ଅଂଶଟି କେବେହେଲେ ବାହାରକୁ ଆତ୍ମପ୍ରକାଶ କରିବ ନାହିଁ। ଡାହାଣ ହାତରେ ଥିବା ମୋର ଘଡ଼ିଟିକୁ ଆଉ ଥରେ ଦେଖି ନେଇ ମୁଁ ଅନୁଚ୍ଚ ସ୍ୱରରେ କହେଁ, "ରାଜା"।

ରାଜା ପୁଣି ଥରେ ମୋ ସାମ୍‌ନାରେ ଠିଆ ହେଇ ଯାଏ। ମୁଁ ଚେନ୍‌ଟା ଉଠେଇ ନେଇ ତା' ବେକରେ ବାନ୍ଧି ଦିଏଁ ଏବଂ ଧପ୍ ଧପ୍ କରି ଅତ୍ୟନ୍ତ ପୁରୁଣା ସୋଟ୍‌ସମେନ୍‌ର ଆଦବ କାଇଦାରେ ତଳକୁ ଓହ୍ଲେଇ ପଡ଼େଁ। ମୋ ସହିତ ରାଜା ବି। ଆମର ମର୍ଣ୍ଣିଂ ୱାକ ଆରମ୍ଭ ହୁଏ ସେଇଠୁ।

ଗେଟ୍ ଖୋଲି ବାହାରକୁ ଆସି ଆମେ ପ୍ରଥମେ ରାଜ ରାସ୍ତା ଉପରେ ଯେତେବେଳେ ପାଦ ଦେଉଁ, ସେତେବେଳେ ମ୍ୟୁନିସିପାଲଟି ଲାଇଟ୍ ପୋଷ୍ଟର ମର୍କରୀ ଲାଇଟ୍‌ଗୁଡ଼ିକ ଆମକୁ କଟ୍‌ମଟ୍ କରି ଏଡ଼େ ଏଡ଼େ ଆଖିରେ ଅନାନ୍ତି ଏବଂ ତା' ପରେ ଆମକୁ ଚିହ୍ନିପାରି, ରାତି ପାହି ଆସିଲାଣି ବୋଲି ଜାଣି ପାରି ଦପ୍ କରି ଆଖି ମୁଦି ଦିଅନ୍ତି। ମ୍ୟୁନିସିପାଲଟିର ଉଜ୍ଜ୍ୱଳ ଲାଇଟ୍‌ଗୁଡ଼ିକ ଲିଭିଗଲା ପରେ ସକାଳର ସଂକେତ ନେଇ ମାଡ଼ି ଆସୁଥିବା ସଫା ସଫା ଆଲୁଅରେ ସହରଟା ବେଶ୍ ସଜ ସଜ ଦେଖାଯାଏ, ମାନେ ମୁହଁ ଦେଖି ହୁଏ, ଚିହ୍ନି ହୁଏନି। ଜାଣି ହୁଏ, ବାରି ହୁଏନି।

ଆମ ଚାଲିରେ କେତେବେଳେ ମୁଁ ଆଗରେ, ତ ରାଜା ପଛରେ। ପୁଣି କେତେବେଳେ ରାଜା ଆଗରେ, ତ ମୁଁ ପଛରେ। ପ୍ରଥମ ମୋଡ଼ରେ ଆମେ ଡାହାଣକୁ ଯାଇ ପ୍ରଧାନ ରାସ୍ତା ଧରୁଁ ଏବଂ ତା' ପରେ ଆମ ଚାଲିର ଗତି ବଢ଼ି ଯାଏ। କେତେ ନରନାରୀ, ଗାଈଗୋରୁ, ଦୋକାନ, ବଗିଚା, ହୋଟେଲ, ରେସ୍ତୋରାଁ ଅତିକ୍ରମ କରି ଆମେ ଆଗେଇ ଯାଉଁ। ସେମାନେ ଆମର ପରିଚିତ ହେଇ ଗଲେଣି। ସେମାନେ ଆମକୁ ଚିହ୍ନି ଗଲେଣି। ସେମାନେ ଯଦି ନିଜ ନିଜ ଭିତରେ କଥା ହେଉଥିବେ, ତେବେ କହୁଥିବେ ଯେ ସକାଳୁ ସକାଳୁ ଯେତେ ପରାଧୀନ କୁକୁର ନିଜ ବେକରେ ବନ୍ଧା ହୋଇଥିବା ଜଂଜିରଟିକୁ ମାଲିକ ହାତରେ ଧରେଇ ନିଜକୁ ଅତି ସ୍ୱାଧୀନ ଭାବରେ ବିଚରଣ କରି ପାରୁଥିବା ଅଧିକାର ଅଛି ବୋଲି ଭାବି ଏଇ ରାସ୍ତାରେ ଯାଉଚନ୍ତି ସେମାନଙ୍କ ଭିତରେ ଏଇ ଗୋଟିଏ ମାତ୍ର କୁକୁର ଯେ'କି ଅସ୍ୱାଭାବିକ ଭାବେ ତା'ର ଲାଞ୍ଜଟିକୁ ମଧ ହରେଇ ବସିଚି।

ମୋ କୁକୁର ଜାତିରେ ଡୋବରମେନ୍।

ଆମେ ଚାଲିଥାଉଁ। ସମସ୍ତଙ୍କୁ ପଛକୁ ପକେଇ ଆମେ ଚାଲି ଥାଉଁ। ଦ୍ୱିତୀୟ ମାଇଲ ଖୁଣ୍ଟ, ଯାହାପରେ ଟିକେ ନିଛାଟିଆ ରାସ୍ତା ଆରମ୍ଭ ହୁଏ, ସେଇଟାକୁ ଅନେକ କାରଣରୁ ମୁଁ ଗୋଟେ ବିଶେଷ ଖୁଣ୍ଟ ବୋଲି ବରାବର ମନେ କରେଁ। ଏକ୍‌ରେ, ସେଇ ଖୁଣ୍ଟ ପାଖରେ ସହର ସରି ଯାଏ। ଦୁଇରେ, ସେଇଠି ସେଇ ସହରର ପାଦ ପାଖରେ ଥାଏ ଗୋଟାଏ ଛୋଟ ଦୋମହଲା କୋଠା। ତିନ୍‌ରେ, କୋଠା ସାମନାରେ ଛୋଟ ବଗିଚାଟାଏ। ବଗିଚା ଚାରି ପଟେ ଡ୍ରୁପିଂ ଦେବଦାରୁର ଲୋଭନୀୟ ପରେଡ୍ ଓ ତାର ମର୍ମର (ଶୀତ ଦିନର ଖୋଲା ପବନରେ) ସଂଗୀତ। ବଗିଚା ଭିତରେ ଲନ୍‌ର ମୋଟା ଗାଲିଚା। ଲନ୍‌ର କଢ଼େ କଢ଼େ ସିଜନ୍ ଫୁଲର ପଟୁଆର। ଆଉ ଚାରିରେ—କି ଆଶ୍ଚର୍ଯ୍ୟ ଯେ କେହି କେବେ ଦେଖା ଯାଉ ନ ଥିବା ନିର୍ଜନ ଜାଗାରେ ଠିକ୍ ସେତିକି ବେଳେ ବାହାରି ଆସନ୍ତି ଜଣେ ମହିଳା। ବୟସ କେତେ କହି ପାରିବିନି। ଆଃ, ମହିଳାମାନଙ୍କ ବୟସ କିଏ ବା କଳନା କରି ପାରିବ ?

ସେ କେବେ କେବେ ଜିନ୍ ଓ ସାର୍ଟ ପିନ୍ଧନ୍ତି। କେବେ କେବେ ସାଲ୍‌ୱାର୍ କମିଜ୍ କିମ୍ବା କେବେ କେବେ ଶାଢ଼ୀ ବ୍ଲାଉଜ୍ ଏବଂ ତା' ଉପରେ ସୁନ୍ଦର ଶାଲଟିଏ (ଯଦି ପାଗ ଥଣ୍ଡା ଥାଏ)। ଗୋଡ଼ରେ କିନ୍ତୁ ସେଇ କେନ୍‌ଭାସ୍ ସୁ। ପେଣ୍ଟ ଓ ସାର୍ଟ ପିନ୍ଧିଥିଲେ ମୁଣ୍ଡରେ ଟୋପି ମଧ ଦେବାକୁ ଭୁଲନ୍ତିନି। ଟୋପି ନ ଥିଲେ ମୁଣ୍ଡବାଳ ଯେ ନିୟମିତ କଟାଯାଏ ବେଶ୍ ସୁସଜ୍ଜିତ ଭାବରେ, ଏ କଥା ପରିଷ୍କାର ଜଣାପଡ଼େ।

ସେ ମଧ୍ୟ ଚାଲନ୍ତି। ମୁଁ ଯୋଉ ପର୍ଯ୍ୟନ୍ତ ଯାଏଁ, ସେ ତାର ଆଉ ଟିକିଏ ଆଗକୁ ଯାଆନ୍ତି। କୋଉ ପର୍ଯ୍ୟନ୍ତ ମୁଁ ଜାଣେନା। ମୁଁ ଚତୁର୍ଥ ମାଇଲ ଖୁଣ୍ଟ ପାଖରେ ଥିବା ମୁଣ୍ଡା ଓ ଅଳ୍ପ ଉଚ୍ଚା ପାହାଡ଼ ଉପରେ ଏବେ ଏବେ ତିଆରି ଚାଲିଥିବା ଗୋଟାଏ ମନ୍ଦିର ପାଖରୁ ଫେରି ଆସେଁ। ଆମ ଚାଲିରେ ବରାବର ଥାଏ ବ୍ୟବଧାନ। ପ୍ରାୟ ଶହେ ଫୁଟ। କେବେ କେବେ ସେ ଆଗରେ ତ ମୁଁ ପଛରେ କିମ୍ବା ସେ ପଛରେ ତ ମୁଁ ଆଗରେ। ମୁଁ ତାଙ୍କୁ ଦେଖେଁ, ସେ ଗେଟ୍ ଖୋଲି ରାସ୍ତାକୁ ଆସିଲା ମାତ୍ରେ ଏକ ଲୟରେ ଏବଂ ଗୋଟିଏ ନର୍ମାଲ୍ ସ୍ପିଡ୍‌ରେ ଆଗେଇ ଚାଲନ୍ତି। ମୁଁ ବି ସେମିତି ଚାଲେଁ। ତେବେ, ମୁଁ ଲକ୍ଷ୍ୟ କରିଚି ତାଙ୍କ ଗେଟ୍ ପାଖରୁ ଆମେ ଚାଲିଲାବେଳେ ଆମର ସ୍ପିଡ୍ ବିଷୟରେ ଆମେ ସଚେତନ ଥାଉଁ କିମ୍ବା ହେଇ ଯାଉ। ତା'ର ମାନେ ମୁଁ ଲକ୍ଷ୍ୟ କରିଚି, ସେ ଯଦି ମୋ ପଛରେ ଥାଆନ୍ତି, ସେ କେବେହେଲେ ପାଦର ଗତି ବଢ଼େଇ ଆମ ଦୂରତ୍ୱ କମେଇବାକୁ ଚେଷ୍ଟା କରିନାହାନ୍ତି କିମ୍ବା ସେ ଆଗରେ ଥିଲେ ସ୍ପିଡ୍ କମେଇ ମୋ ସହିତ ମିଶିବାକୁ ଇଚ୍ଛା କରି ନାହାନ୍ତି। ବରଂ ସ୍ପିଡ୍ ଏପରି ରହିଚି ଯେ ଆମର ବ୍ୟବଧାନ କେବେ ବଢ଼େ ନାହିଁ କି କମେ ନାହିଁ।

ମୁଁ ନିଜେ ମଧ୍ୟ ଏ ବିଷୟରେ ସଚେତନ ଥାଏଁ ବରାବର। ସେ କିମ୍ବା ମୁଁ କେବେ ବି ଥରୁଟିଏ ପାଇଁ ମଧ୍ୟ ପଛକୁ ଚାହିଁ ଆମର ବ୍ୟବଧାନ କେତେ ଅଛି, ତାକୁ ମାପିବାର ବା ଏଡ଼ଜଷ୍ଟ କରିବାର ଚିନ୍ତା କରିନୁଁ। ସବୁ ଯେମିତି ଗୋଟାଏ ଅଟୋମେଟିକ୍ କମ୍ପ୍ୟୁଟର ସାହାଯ୍ୟରେ ହେଇଯାଏ।

ମୋ ଜୀବନରେ ସେମିତି କେବେ ହୁଏନା କି ମୁଁ ମଧ୍ୟ କରେନା। ଦୀର୍ଘ ପଚିଶ ବର୍ଷର ଶୃଙ୍ଖଳିତ ଆର୍ମି ଚାକିରି ଭିତରେ ନୀତି ନୈତିକତା ଓ ଶୃଙ୍ଖଳା ସହିତ ମୁଁ ଏତେ ଅଭ୍ୟସ୍ତ ହେଇ ଯାଇଥିଲି ଯେ ଆବଶ୍ୟକ ନ ଥିଲେ କାହା ସହିତ କଥା ମଧ୍ୟ ହୁଏନି, କାହା ଘରକୁ ଯାଇ ଗପିବା ତ ଦୂରର କଥା।

ଜଣେ ରିଟାୟାଡ଼ ଆର୍ମି ଅଫିସର ଭାବେ ମୋର ନିଜସ୍ୱ ଗୋଟାଏ ପୃଥିବୀ ଅଛି। ସେ ପୃଥିବୀରେ ସବୁବେଳେ ମୁଁ ଏକୁଟିଆ। ମୁଁ ମୋ ନିଜର ରାଜା। ସେ ରାଜାର ରାଜ୍ୟ ଥିଲେ ମଧ୍ୟ ପ୍ରଜା ନ ଥାଏ। ତେଣୁ ସେଠି ରାଜା-ପ୍ରଜା ସମ୍ପର୍କର ପ୍ରଶ୍ନ ଉଠେନା। ସେଠି ହାକିମ-କର୍ମଚାରୀର ସମ୍ପର୍କ ନ ଥାଏ। ନା ଆଦେଶର ଆବଶ୍ୟକତା ଥାଏ, ନା ଥାଏ ତାକୁ ପାଳନ କରିବାର ଆବଶ୍ୟକତା। ଏକୁଟିଆ ନୀରବ ରାଜ୍ୟର ମୁଁ ରାଜା ଓ ପ୍ରଜା ଉଭୟ। ତାକୁ ଯଦି କେହି ସୃଷ୍ଟି ଛଡ଼ା ଜୀବନ ବୋଲି କହେ, ତେବେ ମୁଁ ନିରୁପାୟ।

ତେଣୁ ସେ ଭଦ୍ର ମହିଳା କିଏ ଓ କଅଣ କରନ୍ତି, ଏ ସବୁ ପ୍ରଶ୍ନର କିଛି ଗୋଟେ ଆବଶ୍ୟକତା ଅଛି କି ନା, ସେକଥା ମଧ୍ୟ ମୁଁ ଚିନ୍ତା କରିନି।

ମୁଁ ମୋ ସମୟରେ ମୋ ରାସ୍ତାରେ ଚାଲି ଥାଏଁ। ସେ ମଧ୍ୟ ତାଙ୍କ ସମୟରେ ତାଙ୍କ ରାସ୍ତାରେ ଚାଲନ୍ତି। ଦୁଇଟି ସମାନ ଓ ସମାନ୍ତର ସରଳରେଖା ପରି ଦୁହେଁ ଆଗେଇ ଚାଲନ୍ତି। କିନ୍ତୁ କେହି କାହାକୁ ଭେଟନ୍ତି ନାହିଁ।

ତେବେ, କେବେ କେମିତି ବେଳେବେଳେ ସେଇ ବ୍ୟବଧାନ ବା ଦୂରତ୍ୱ କମେଇବାର ଗୋଟାଏ ଆକସ୍ମିକ ଇଚ୍ଛା ଯେ ମୋ ମନ ଭିତରେ ଉଙ୍କି ମାରି ନାହିଁ, ସେ କଥା ମୁଁ ହଲପ୍ କରି କହି ପାରିବି ନାହିଁ। ବେଳେବେଳେ ସେମିତିକା ଇଚ୍ଛାମାନେ ମୋ ଭିତରେ ଅନେକ ଦିନରୁ ବନ୍ଦ ଥିବା କୋଠରୀ ଭିତରୁ ବାହାରି ଆସିବାର ଚେଷ୍ଟା ଯେ କେବେ ନ କରିଚନ୍ତି, ସେମିତିକା ଗୋଟାଏ ଘୋଷଣାନାମା ମଧ୍ୟ ମୁଁ କେବେହେଲେ ଦେଇ ପାରିବିନି। କିନ୍ତୁ ବେଳେବେଳେ ସେ ଇଚ୍ଛାମାନଙ୍କୁ ମୁଁ ମୋର ସ୍ୱଭାବସିଦ୍ଧ ଶୃଙ୍ଖଳିତ ଆଦବ କାଇଦା ଭିତରେ ଥିବା ସୁନା ପଞ୍ଜୁରୀର ଶୁଆ ପରି ତା ଦେହକୁ ଆଉଁସି ଦେଇ ଏମିତି କହି ଥିବାର ମନେ ପଡୁଚି–ଆଃ, ଏ ଅବେଳରେ ତୁ ବାହାରକୁ ଯାଇ ଏବେ ଆଉ କଅଣ କରିବୁ ଯେ ? ମୋ ଛଡ଼ା ତୋତେ ଆଉ ଏତେ ସ୍ନେହ ସରାଗର ଅମୃତ ମଣୋହୀ କିଏ ତୋ ଥଣ୍ଟ ଆଗରେ ଟେକି ଧରିବ ?

• ଚାଲିବାଟା ଗୋଟାଏ କର୍ତ୍ତବ୍ୟ। ମୁଁ ସେଇ କର୍ତ୍ତବ୍ୟ ପାଳନ କରେଁ ମାତ୍ର। ମୋର କର୍ତ୍ତବ୍ୟ ପାଳନ ବେଳେ ସେଥିରେ ଯେତିକି ନିଷ୍ଠାର ଆବଶ୍ୟକତା ଥାଏ ସେଥିରେ ମୁଁ କେବେ କାର୍ପଣ୍ୟ ପ୍ରକାଶ କରିନି। କର୍ତ୍ତବ୍ୟ ପାଳନ ବେଳେ ସ୍ୱାଭାବିକ ଭାବେ ମୋର ଆତ୍ମାଭିମାନ ମୋତେ ତା'ର ଦୁଇ ପାପୁଲି ଭିତରେ ଘୋଡ଼େଇ ପକାଏ ଏବଂ କହେ, ତୁ ତୋ କାମରେ ଏତେ ସିନ୍‌ସିଅର ଯେ ତୋର ଚାରିପଟେ ଗୋଟାଏ ଲକ୍ଷ୍ମଣ-ରେଖା ଟାଣିବାର ମୋଟେ ଆବଶ୍ୟକତା ନାହିଁ।

ତୋତେ ଫୋପାଡ଼ି ଦେଲେ ବି ତୁ ପୁଣି ମୋ ହାତକୁ ଫେରି ଆସିବୁ। ତୋତେ ଭାଙ୍ଗିଦେଲେ ତୁ ପୁଣି ଆପେ ଆପେ ଯୋଡ଼ି ହେଇ ଯିବୁ। ପାଣିରେ ପକେଇ ଦେଲେ ବୁଡ଼ି ଯିବୁନି କି, ନିଆଁରେ ପୋଡ଼ି ଦେଲେ ପୋଡ଼ି ହେବୁନି।

ମୁଁ ସେଇ ଗର୍ବରେ ଫୁଲି ଉଠେ। ସ୍ୱାଭିମାନ ଓ ମୋର ଅହଂକାରମାନେ ମୋତେ ଏଇଥିପାଇଁ ଅନେକାଂଶରେ ସ୍ୱେଚ୍ଛାଚାରୀ ବୋଲି ଅଭିହିତ କରନ୍ତି। ସେ ସ୍ୱେଚ୍ଛାଚାରର ପାଚେରୀ ଭିତରେ ମୁଁ ଘୂରିବୁଲେଁ ଗୋଟାଏ ଅମୁହାଁ ଦେଉଳର ଦେବତା ପରି।

ତେଣୁ ମୁଁ ଚାଲେଁ, ଏକାକୀ ଚାଲେଁ। ସେ ଏକାକୀ ଚାଲିବାରେ କେମିତି ଗୋଟାଏ ଗର୍ବ ଥାଏ। ଯଦିଓ ସେ ଗର୍ବରେ ଥାଏ ଶୂନ୍ୟତା। ଆଉ ସେ ଶୂନ୍ୟତା ଭିତରେ ଥାଏ ଗୋଟାଏ ଖାଁ ଖାଁ ଭାବ।

ଦିନକର କଥା। ସେଦିନ ମୁଁ ଠିକ୍ ସମୟରେ ରାଜାକୁ ନେଇ ଘରୁ ବାହାରି ଥିଲି। ଚାରି ନମ୍ବର ମାଇଲ ଖୁଣ୍ଟି ପାଖରେ ମୁଁ ପହଞ୍ଚିଲା ବେଳକୁ ହଠାତ୍ କେମିତି କେଜାଣି ଅଚିହ୍ନିଆ ମେଘ ଖଣ୍ଡେ ସେଇ ମୁଣ୍ଡିଆ ପାହାଡ଼ର ଅଧା ତିଆରି ଦେଉଳର ଚୂଡ଼ା ଉପରେ ଦେଖାଦେଲା। ମେଘଟା ବଡ଼ ନୁହେଁ, ଛୋଟ ମଧ୍ୟ ନୁହେଁ। କିନ୍ତୁ କଳା ମୁଚୁମୁଚୁ ମୁଗୁନି ପଥରରେ ଗଢ଼ାପରି। ହଠାତ୍ ପଂଖା ବିଞ୍ଚି ଦେଲା ପରି ଦମକାଏ ଥଣ୍ଡା ଶୀତଳ ପବନ ମୋ ଦେହ ଓ ଝାଳୁଆ ମୁହଁକୁ ଟିକିଏ ଆଉଁସି ଦେଇ ପଳେଇଲା। ରାଜା ଅଟକି ଗଲା। ସେ ବିପଦର ସଂକେତ ବାରି ପାରିଲା ବୋଧେ। ମୋତେ ପାହାଡ଼ ଉପରକୁ ଟାଣିଲା। ଆସନ୍ନ ବିପଦରୁ ମୁକ୍ତି ପାଇବା ପାଇଁ ଏଇଟା ଏକମାତ୍ର ବାଟ। ପଛକୁ ଫେରି ଚାହିଁଲି। ସିଧା ଲମ୍ବ ରାସ୍ତା ପେଟେଇ ହେଇ ପଡ଼ିଚି। ସେ ସେମିତି ଚାଲି ଥାଆନ୍ତି କି ତାଙ୍କ ଗତିର ବେଗ କମି ଆସିଥାଏ, ଜାଣିବାର ଉପାୟ ନଥାଏ।

ରାଜା ମୋତେ ଉଚ୍ଛନ୍ନ କଲା। ସେ ମୋତେ ପାହାଡ଼ ଉପରକୁ ଭିଡ଼ିଲା। ବର୍ଷାଟା ଆସିବାକୁ ଆହୁରି ଟିକିଏ ଡେରି ଅଛି ବୋଲି ମୋର ମନେ ହେଉଥିଲେ ବି ହଠାତ୍ ଖଳ ଖଳ ଗଳ ଗଳ କରି ଅସରାଏ ଯେ ପିଟି ନ ଦେବ, ସେ କଥା କିଏ କହିବ? ରାଜା ବୋଧେ ସେମିତି କିଛି ଅନୁଭବ କଲା। ଅନ୍ୟ ଉପାୟ ନ ଦେଖି ଏବଂ ମୋର ସମ୍ପୂର୍ଣ୍ଣ ଇଚ୍ଛା ବିରୁଦ୍ଧରେ ମୁଁ ରାଜା ଦ୍ୱାରା ଏକ ପ୍ରକାର ଟାଣି ହେଇ ଗଲି।

ଟପ୍ ଟପ୍ ପାଣି ପଡ଼ିବାକୁ ଆରମ୍ଭ କଲା। ପାଦ ଲମ୍ବା ଲମ୍ବା କରି ମୁଁ ରାଜା ପଛରେ ମୁଣ୍ଡିଆ ପାହାଡ଼ ଉପରକୁ ଉଠିବାକୁ ଲାଗିଲି। ପ୍ରାୟ ପଚାଶ ଷାଠିଏ ଫୁଟର ପାହାଡ଼ଟା। ସେ ପାହାଡ଼ ଉପରକୁ ମୁଁ ଯେ ଆଗରୁ କେତେଥର ନ ଯାଇଛି, ସେ କଥା ନୁହେଁ। କିନ୍ତୁ ସେତେବେଳେ ଯିବାର ସେମିତି କିଛି କାରଣ ନ ଥିଲା। କୌଣସି ଆବଶ୍ୟକତା ନ ଥିଲା, ଉଦ୍ଦେଶ୍ୟ ନ ଥିଲା। ଏମିତି ବୁଲି ଚାଲି ଯାଉଥିଲି।

କିନ୍ତୁ ଏଥର ଆବଶ୍ୟକତା ମୋତେ ଟାଣି ନେଇ ଥିଲା। ରାଜା ମଧ୍ୟ ଟାଣୁଥିଲା। ମାତ୍ର କେଇଟା କୁଦାରେ ମୁଁ ପାହାଡ଼ ଉପରେ ଥିବା ମନ୍ଦିର ପାଖରେ ଯାଇ ହାଜର ହେଇଗଲି। ରାଜା ଆଗରେ ଓ ମୁଁ ତା ପଛରେ।

ବରକୋଳି ପରି ବଡ଼ ବଡ଼ ପାଣି ଟୋପା ପଡ଼ି ପୁଣି ଥମି ଗଲା। ଆମେ ସେତେବେଳକୁ ମନ୍ଦିର ଭିତରେ। ଥଣ୍ଡା ପବନ ସେମିତି ବହୁଥାଏ। ମନ୍ଦିରଟା ସେମିତି ବେଶୀ ବଡ଼ ନୁହେଁ। ଗର୍ଭଗୃହର କାମ ସରିନି ବୋଲି ସେଠି ବାଲି ବୁଜା ହେଇଚି। ଭିତରଟା କେତେକାଂଶରେ ଟିକିଏ ଅନ୍ଧାରୁଆ। ରାଜାକୁ ଗର୍ଭଗୃହ ସାମ୍ନା ପୂଜା

ମଣ୍ଡପରେ ଛାଡ଼ି ଦେଇ କହିଲି "ସିଟ୍ ଡାଉନ୍"। ତା ପରେ ମୁଁ ଗର୍ଭଗୃହ ଭିତରକୁ ପଶି ଗଲି। ଘରର ଅନ୍ଧାରୁଆ ଆସ୍ଥାନମାନଙ୍କରୁ ଚମଚଟା, ବେଙ୍ଗ ଏବଂ ଝିଟିପିଟିମାନେ ଖପ୍‌ଖାପ୍ ଡେଇଁ ପଡ଼ିଲେ। ଆଃ, ବାଲିଗଦାର ନିର୍ଜନ ସ୍ଥାନମାନଙ୍କରେ ଏମାନେ ସପରିବାର ଗୋଟାଏ ସ୍ଥାୟୀ ବାସସ୍ଥାନର ପଟ୍ଟା ପାଉତି ପାଇ ସାରିଥିଲେ ବୋଧେ। ମୁଁ ତାଙ୍କ ସୁଖ ସନ୍ତୋଷରେ ବ୍ୟାଘାତ ସୃଷ୍ଟି କଲି। କେମିତି କେଜାଣି ନିର୍ମେଘ ଆକାଶରୁ ବର୍ଷା ବିନ୍ଦୁ ବେଳେ ବେଳେ ଝରି ପଡ଼ିଲା ପରି ମୋ ଭିତରେ ସେମିତି ଗୋଟେ ସମ୍ବେଦନାର କ୍ଷିଅକ ଖଣ୍ଡେ ସେମାନଙ୍କ ପାଇଁ ଓହଳି ପଡ଼ିଲା। ମୋ ଅଜାଣତରେ ମୋ ପାଟିରୁ ଚୁ ଚୁ ଶବ୍ଦଟିଏ ବାହାରି ପଡ଼ିଲା।

ହଠାତ୍ ରାଜା ଗର୍ଜି ଉଠିଲା ଏବଂ ମନ୍ଦିରର ଦ୍ୱାର ଦେଶରେ ଯାଇ ଠିଆ ହେଇ ଗଲା। ଠିକ୍ ଯେମିତି ନିରାପତ୍ତା ରକ୍ଷୀମାନେ ଫାଟକ ପାଖରେ ବାଟ ଓଗାଳି ଠିଆ ହୁଅନ୍ତି। ତା ଆଖିରୁ ନିଆଁ ବର୍ଷୁ ଥିବାର ଦେଖିଲି। କାରଣ ସେଇ ଗର୍ଜନ ଭିତରେ ସେ ବେଳେ ବେଳେ ମୋ ଆଡ଼କୁ ମଧ୍ୟ ଦେଖୁଥିଲା। ମୁଁ ଚମକି ପଡ଼ିଲି। ମୁଁ ତ ଆଗରୁ ତାକୁ ମୁକ୍ତ କରି ଦେଇଥିଲି। ତା ଉପରେ ମୋର ବିଶ୍ୱାସ ଥାଏ। ମୁଁ ଜାଣେଁ, ସେ ମୋର ବିନା ଅନୁମତିରେ କୁଆଡ଼େ ଯିବ ନାହିଁ।

ମୁଁ ତା ପାଖକୁ ଦୌଡ଼ି ଆସିଲି। ପଶୁକୁ ପୁଣି କି ବିଶ୍ୱାସ? କେତେବେଳେ କୋଉ କଥା। ଝାମ୍ପି ନେଲି ଆଗେ ଛାଡ଼ି ଦେଇଥିବା ଚେନଟିକୁ। ତାପରେ ତା ପାଖକୁ ଆସିଲି। କଅଣ ପାଇଁ ଭୃକୁଟି, ଜାଣିବାକୁ। ମୁଁ ତା ପାଖକୁ ଆସି ଯାହା ଦେଖିଲି, ସେଥିରେ ଆଶ୍ଚର୍ଯ୍ୟ ନ ହେଇ ରହି ପାରିଲିନି। ଇଏ ତ ସେଇ ଭଦ୍ର ମହିଳା। ଠିଆ ହେଇ ଯାଇଚନ୍ତି, ରାଜାକୁ ଦେଖି। ଠିକ୍ ମନ୍ଦିର ଦେହର ଗୋଟାଏ ପଥର ମୂର୍ତ୍ତି ପରି। ଟିକିଏ ବି ହଲଚଲ ନାହିଁ। ଅନେଇଚନ୍ତି ରାଜାକୁ। ଆଖିରେ ପଲକ ପଡୁନି କି ଆଖି ଏ ପାଖ ସେ ପାଖ ହେଉନି। ତାଙ୍କର ସେ ଆଖି ଦେଖିଲେ, ଯେ କେହି ଜାଣିଯିବ, ସେ କେତେ ଶାନ୍ତ କିନ୍ତୁ କେତେ ଗମ୍ଭୀର। କେତେ ଉଦାର ପୁଣି କେତେ ନିର୍ଭୀକ, କେତେ ପ୍ରଶାନ୍ତ ଏବଂ କେତେ ସୁନ୍ଦର।

ନୋ, ନୋ, ରାଜା। ମୁଁ ଗମ୍ଭୀର ସ୍ୱରରେ ତାକୁ ନିର୍ଦ୍ଦେଶ ଦେଲି। ରାଜା ସଙ୍ଗେ ସଙ୍ଗେ ବୁଲି ପଡ଼ିଲା। ଏକାନ୍ତ ଅନୁଗତ ପରି ସେ ମୋ ପାଖକୁ ଫେରି ଆସି ମୋ ଗୋଡ଼ ପାଖରେ ଦେହକୁ ଘସି ଠିଆ ହେଲା ଏବଂ ମୁହଁ ଉଠେଇ ମୁଁ ଆଉ କଅଣ କହିବାକୁ ଚାହେଁ, ସେ କଥା ଜାଣିବା ପାଇଁ ଏକାନ୍ତ ବଶମ୍ବଦ ଆଖିରେ ଅନେଇଲା।

ସେ ଉପରକୁ ଉଠି ଆସିଲେ। ଟିପ୍ ଟିପ୍ ବର୍ଷା ସେତେବେଳକୁ ଆରମ୍ଭ ହେଇ ଯାଇଥାଏ। ସେ ଉଠି ଆସିଲେ ଏବଂ ଶାଢ଼ି କାନିରେ ମୁହଁ ପୋଛିବାକୁ ଆରମ୍ଭ କଲେ। ମୁହଁ ପୋଛିଲା ବେଳେ ସେଠି ଆଉ କାହାରି ଉପସ୍ଥିତି ଅଛି ବୋଲି

ସ୍ୱୀକାର କରିବାକୁ ଚାହୁଁ ନ ଥିଲେ। ମୁହଁ ପୋଛି ସାରି ମଧ ସେ ସେମିତି ଅନ୍ୟମନସ୍କ ଭାବରେ ମନ୍ଦିରର କାନ୍ଥ, ତା'ର ଅଧା ତିଆରି ପାଚେରୀ ଏବଂ ଆଉ କେତେବେଳେ ମନ୍ଦିରର ପଶ୍ଚିମ ଦରଜା ଦେଇ ଆକାଶ ଓ ବର୍ଷାକୁ ଦେଖୁଥିଲେ। ଯେମିତି କି ସେ କେବେ ବର୍ଷା ଦେଖି ନ ଥିଲେ, ବର୍ଷାର ସ୍ୱର ଶୁଣି ନ ଥିଲେ। ବର୍ଷାକୁ ଏତେ ପାଖରେ ଏତେ ନିବିଡ଼ ଭାବରେ ସ୍ପର୍ଶ ମଧ କରି ନ ଥିଲେ। ମୁଁ ଲକ୍ଷ୍ୟ କଲି, ସେ ଏବେ ବର୍ଷା ଆଡ଼ୁ ମୁହଁ ଫେରେଇ ମନ୍ଦିରର ଗର୍ଭଗୃହକୁ ଅନାବଶ୍ୟକ ଭାବେ ଦେଖୁଛନ୍ତି।

ରାଜା ଯା' ଭିତରେ ପୁଣି ଥରେ ମୋ ହାତରୁ ଖସି ଯାଇ ସାମନା ଦରଜାର ବାହାର ପଟେ ବସି ରହିଲା। ସେ ମଧ ଆମ ପରି ବର୍ଷାକୁ ଦେଖୁଥାଏ ବୋଧେ।

ବର୍ଷା ସେମିତି ଚାଲିଥାଏ। ଅଳ୍ପ ବ୍ୟବଧାନରେ ବିପରୀତମୁଖୀ ହେଇ ପଡ଼ିଥିବା ଦୁଇଟି ପଥର ଉପରେ ଅଗତ୍ୟା ଆମେ ବସି ପଡ଼ି ଥାଉଁ। ସେଠି ସେମିତି ବସିବା ଛଡ଼ା ଆମ ପକ୍ଷେ ଆଉ କିଛି ଉପାୟ ନଥିଲା। ଏମିତି ଗୋଟାଏ ମନ୍ଦିରର ନିର୍ଜନ ପରିବେଶ ଭିତରେ ଆମେ ଦୁହେଁ ଏକା। କେହି କାହାକୁ କଥା ନ କହିବା ଯେତିକି ଅସ୍ୱାଭାବିକ, ସାଧାରଣ ସୌଜନ୍ୟ ଦୃଷ୍ଟିରୁ ସେତିକି ଅବାଞ୍ଛିତ ମଧ। କିନ୍ତୁ କଅଣବା କୁହାଯାଇ ପାରେ? କୋଉ କଥାରୁବା ଆରମ୍ଭ କରା ଯାଇ ପାରେ ଆଳାପ। କିଏ ପ୍ରଥମେ ଆରମ୍ଭ କରିବ, କୋଉ ବିଷୟରୁ ଆରମ୍ଭ ହେବ? ବ୍ୟକ୍ତିଗତ ପରିଚୟ ଜିଜ୍ଞାସାରୁ। ତା'ପରେ? କିନ୍ତୁ ସେ ଯଦି ତାକୁ ଭିନ୍ନ ଅର୍ଥରେ ନିଅନ୍ତି? ଏତେ ଦିନପରେ ହଠାତ୍ ତାଙ୍କୁ ଏକୁଟିଆ ପାଇ ମୁଁ ଅକାରଣ ଏବଂ ଅନୌପଚାରିକ ଭାବେ ତାଙ୍କ ସହିତ ଆଳାପ କରିବାକୁ ଚେଷ୍ଟା କରୁଚି ବୋଲି ଯଦି ସେ ଭାବନ୍ତି। ତା' ପରେ ସେ ଯଦି ମୋର ଆହ୍ୱାନର ଆନ୍ତରିକତାକୁ ପ୍ରତ୍ୟାଖ୍ୟାନ କରନ୍ତି?

ଆଉ ଯଦି ତାଙ୍କ ଆଡ଼ୁ କଥାଟା ଆରମ୍ଭ ହୁଏ? ସେ କଅଣ ବା ମୋତେ ପଚାରିବେ? ଆପଣ କୋଉଠି ରହନ୍ତି? କଅଣ କରନ୍ତି? ଆପଣଙ୍କ ସାଥିରେ–? ନା, ଏ ପ୍ରଶ୍ନ ସେ ପଚାରି ନ ପାରନ୍ତି। କାରଣ ସେ ମୋତେ ବରାବର ଏକୁଟିଆ ଦେଖି ଆସୁଚନ୍ତି। ତଥାପି ପଚାରିବା କିଛି ଅସମ୍ଭବ ନୁହେଁ।

ହଃ, ତାଙ୍କର କି ଗରଜ ପଡ଼ିଚି ଯେ ସେ ମୋତେ ପ୍ରଥମେ କଥା କହିବେ? ତେବେ ଏଇ ବୋରଡ଼ମରୁ ମୁକ୍ତି ପାଇବା ପାଇଁ ସେ ହୁଏତ ପଚାରି ପାରନ୍ତି, ବର୍ଷା କେତେବେଳେ ଛାଡ଼ିବ, କିମ୍ବା ହୁଏତ କହିପାରନ୍ତି, କାଲି ରାତିରେ ତ ପାଗ ଶୁଖିଲା ରହିବ ବୋଲି ଟିଭି କହିଥିଲା।

କିନ୍ତୁ ଏ ସବୁ ଅନାବଶ୍ୟକ ପ୍ରଶ୍ନ। ଯାର କିଛି ମାନେ ହୁଏନା।

ହଠାତ୍ ମୁଁ ଅନୁଭବ କଲି ମୋ ତଣ୍ଟି ଶୁଖି ଶୁଖି ଆସୁଚି। ମୋ ଜିଭ କେମିତି ଅଟକି ଅଟକି ଯାଉଚି।

ଯା' ଭିତରେ କେତେ ସମୟ ବିତି ଯାଇଚି, ମୁଁ ଜାଣେନା। ରାଜା ଫେରିଆସି କଅଣ ଭାବିଲା କେଜାଣି, ଆମ ଦି ଜଣଙ୍କୁ ଅନେଇଲା ଏବଂ କୁଁ କୁଁ ହେଲା। ମୁଁ ଦେଖିଲି, ବର୍ଷା ଯା ଭିତରେ କେତେବେଳୁ ଛାଡ଼ି ଗଲାଣି। ମୁଁ ଉଠିଲି। ମୋ ସହିତ ସେ ମଧ୍ୟ। ପ୍ରାୟ ପାଖାପାଖି ହେଇ ଆମେ ମନ୍ଦିର ବାହାରକୁ ଚାଲି ଆସିଲୁଁ। ଆଃ, ବର୍ଷାଧୁଆ ପୃଥିବୀଟା ଯେ ଏତେ ଚମତ୍କାର ଦେଖାଯାଏ, ସେ କଥା ମୁଁ ସେଦିନ ପ୍ରଥମ କରି ଜାଣିଲି।

ସେ ଦିନ, ମୁଁ ମୋ ଘର ପାଖାପାଖି ହେଇଚି, ହଠାତ୍ ଛକ ପାଖରେ ରାକେଶକୁ ଦେଖିଲି। ସେ ମୋର ଜଣେ ପୁରୁଣା ବନ୍ଧୁ। ସେ କାର୍‌ରେ କୁଆଡ଼େ ଯାଉଥିଲା। ସେ ଅଟକିବାରୁ ମୁଁ ତାକୁ କହିଲି, ଏବେ ଏବେ ମୁଁ ତୋ ଘରକୁ ଯାଇ ଥାଆନ୍ତି। ଗୋଟାଏ ଜରୁରୀ କାମ ଥିଲା। ସେ କହିଲା, ତେବେ ଗାଡ଼ିରେ ବସ୍, ଆମେ ଘରକୁ ଫେରିଯିବା। ମୁଁ କହିଲି, ନା, ଥାଉ, ଫେରିବା ଦରକାର ନାହିଁ। ଦେଖା ଯେତେବେଳେ ହେଇ ଯାଇଚି, ଆଉ ଦରକାର ନାହିଁ। ତା ଛଡ଼ା ମୁଁ ମଧ୍ୟ ଟିକିଏ ବ୍ୟସ୍ତ ଅଛି।''

ସେ ମୋ କଥା ଶୁଣି ଗାଡ଼ିରୁ ବାହାରି ଆସି ମୋ ପାଖରେ ଠିଆ ହେଲା।

ମୁଁ କହିଲି, ତୁ ତ ଆଜି ଫ୍ରି ଥିବୁ। ଆଜି ଉର୍ମିଳାକୁ ନେଇ ଠିକ୍ ଏଗାରଟା ବେଳକୁ ତୁ ଟିକିଏ କୋର୍ଟକୁ ଆସିବୁ ?

କୋର୍ଟକୁ ? ସେ ଆଶ୍ଚର୍ଯ୍ୟ ହେଇ ପଚାରିଲା।

ମୁଁ କହିଲି, ନା, ସେମିତି କିଛି ନୁହେଁ। ତମେ ଦି'ଜଣ ସାକ୍ଷୀ ପଡ଼ିଲେ ଯଥେଷ୍ଟ ହେବ। ମାତ୍ର ପନ୍ଦର ମିନିଟ୍‌ରେ ମେରେଜ୍ ରେଜିଷ୍ଟ୍ରେସନ କାମଟା ସରିଯିବ। ବାକି କଥା ତୁ ସେଇଠି ଜାଣିବୁନି ?

ମୁଁ ତରତରରେ ଚାଲି ଆସୁଥିଲି। ପୁଣି ଥରେ ପଛକୁ ଫେରି ତାକୁ କହିଲି, ଏଇ ଶୁଣ, ଆଜି ଲଞ୍ଚଟା ଆମେ ସେଇ ଅଶୋକା କି ସେମିତି କୋଉ ଗୋଟାଏ ଭଲ ହୋଟେଲରେ କରିବା। ଉର୍ମିଳକୁ ତୁ ମୋ ତରଫରୁ ଏ ନିମନ୍ତ୍ରଣଟା ମଧ୍ୟ ଜଣେଇ ଦେବୁ।''

ସେ ସେମିତି ଠିଆ ହେଇଥାଏ ଭକୁଆଙ୍କ ପରି। ବୋଧେ କିଛି କହିବାକୁ ଚାହୁଁଥିଲା। ମୁଁ ରାଜାକୁ ଧରି ପୁଣି ଫେରି ପଡ଼ିଲି।



(ଝଙ୍କାର, ମେ, ୧୯୯୬)